

ଗୁରୁପ୍ରସାଦ ମହାନ୍ତି ( ଜନ୍ମ ୧୯୨୪ ) ଓଡ଼ିଶାର ପ୍ରମୁଖ ଆଧୁନିକ କବି ଓ ସ୍ୱାଧୀନୋତ୍ତର ଓଡ଼ିଆ କବିତାରେ ନୂତନ ଧାରାର ପ୍ରବର୍ତ୍ତକ । ସେ ଚାଳିଶ ଦଶକର ଆରମ୍ଭରୁ କବିତା ଲେଖାଲେଖି ଆରମ୍ଭ କରିଥିଲେ ଓ ତାଙ୍କର ଅଳ୍ପ କେତୋଟି କବିତା ପ୍ରଥମେ 'ନୂତନ କବିତା'ରେ (୧୯୫୫) ସଙ୍କଳିତ ହୋଇଥିଲା । ପ୍ରଥମ କବିତା-ଗ୍ରନ୍ଥ 'ସମୁଦ୍ର ସ୍ନାନ' (୧୯୭୦) ୧୯୭୩ରେ କେନ୍ଦ୍ର ସାହିତ୍ୟ ଆକାଡେମୀ ପୁରସ୍କାର ପାଇଥିଲା ଓ ଦ୍ୱିତୀୟ ଗ୍ରନ୍ଥ 'ଅନ୍ତର୍ଲୀନ ଅଭିସାର' ୧୯୮୮ରେ ପ୍ରକାଶ ପାଇଛି । ଗୁରୁପ୍ରସାଦଙ୍କର କବିତାର

ସଂଖ୍ୟା ସ୍ୱଳ୍ପ, କିନ୍ତୁ ତାଙ୍କର ପ୍ରତ୍ୟେକ କବିତା ପ୍ରଚଣ୍ଡ ଶକ୍ତି ଓ ପ୍ରଜ୍ଞାରେ ଦୀପ୍ତି-ବନ୍ତ । ଆଶା 'କବିତା ସମଗ୍ର'ର ପ୍ରକାଶ ଏହି ପ୍ରତିଭାବାନ କବିଙ୍କର ଅଗଣିତ ଅନୁରାଗୀ ପାଠକମାନଙ୍କୁ ଆନନ୍ଦ ଦେବା ସଙ୍ଗେ ସଙ୍ଗେ ସେହି ଅଦ୍ୱିତୀୟ କବିତା-ଗୁଚ୍ଛକର ରସ ଆସ୍ୱାଦନ କରିବା ପାଇଁ ପୁଣି ଥରେ ସୁଯୋଗ ଆଣିଦେବ ।



# କବିତା ସମଗ୍ର

# KABITA SAMAGRA

ଲେଖକ :
ଗୁରୁପ୍ରସାଦ ମହାନ୍ତି

Written by :
**Guruprasad Mohanty**

ପ୍ରଥମ ପ୍ରକାଶ :
ଫେବୃୟାରୀ, ୧୯୯୫

First Edition :
February, 1995

ପ୍ରକାଶକ :
ଚତୁରଙ୍ଗ ପ୍ରକାଶନୀ
ଭୁବନେଶ୍ୱର-୯

Publisher :
**Chaturanga Prakashani**
Bhubaneswar-9

ପ୍ରଚ୍ଛଦ ଶିଳ୍ପୀ :
ଅସିତ୍ ମୁଖାର୍ଜୀ

Cover Design :
**Asit Mukherjee**

ମୁଦ୍ରଣ :
କଳିଙ୍ଗ ମୁଦ୍ରଣୀ
ନିମଚୌଡ଼ି, କଟକ-୨

Printed at :
**Kalinga Mudrani**
Nimchouri, Cuttack-2

ପରିବେଷକ :
ଗ୍ରନ୍ଥାଳୟ
ସି-୧୭, ବାଣିଜ୍ୟ ଭବନ
ୟୁନିଟ୍-୨, ଭୁବନେଶ୍ୱର-୯

Distributor :
**GRANTHALAYA**
C-17, Banijya Bhawan
Unit-2, Bhubaneswar-9

ମୂଲ୍ୟ : ଟ ୩୦-୦୦
ଶୋଭନ : ଟ ୩୫-୦୦

Price : Rs. 30-00
Deluxe : Rs. 35-00

ଗୁରୁପ୍ରସାଦ ସ୍ୱାଧୀନୋତ୍ତର ଓଡ଼ିଆ କବିତାରେ ଅନନ୍ୟପ୍ରତିଭ ସମ୍ପନ୍ନ ଯୁଗସ୍ରଷ୍ଟା କବି । ତାଙ୍କର କବିତାର ସଂଖ୍ୟା ସ୍ୱଳ୍ପ, କିନ୍ତୁ ପ୍ରତ୍ୟେକ କବିତା ଗୋଟିଏ ଗୋଟିଏ ଅୟସ୍କାନ୍ତ ମଣି ପରି, ନିଜ ନିଜ ଦୀପ୍ତିରେ ଦୀପ୍ୟମାନ । ଷଷ୍ଠ ଦଶକରେ ତାଙ୍କର କବିତାସବୁ ପତ୍ରପତ୍ରିକାରେ ପ୍ରକାଶ ପାଇବା ସାଙ୍ଗେ ସାଙ୍ଗେ କାବ୍ୟ ପ୍ରେମୀ ପାଠକ ମହଲରେ ଗଭୀର ଉତ୍ତେଜନା ଓ ଆନନ୍ଦ ଖେଳି ଯାଇଥିଲା । ବିଶେଷ କରି କବିଙ୍କର 'କାଳପୁରୁଷ'ର ଅନୁଭୂତି, ଭାଷା ଓ ସଙ୍ଗଠନର ଅଭିନବତ୍ୱ ତରୁଣ ପିଢ଼ିର କବି ଓ ପାଠକମାନଙ୍କୁ ଯେପରି ପ୍ରଭାବିତ କରିଥିଲା ତାର ତୁଳନା ନାହିଁ । କବିଙ୍କର ପ୍ରଥମ କବିତା-ସଙ୍କଳନ 'ସମୁଦ୍ର ସ୍ନାନ' ୧୯୭୦ରେ ପ୍ରକାଶ ପାଇଥିଲା ଓ ତିନି ବର୍ଷ ପରେ ୧୯୭୩ରେ ଏହା କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲା । ଅଠର ବର୍ଷ ପରେ, ୧୯୮୮ରେ, କବିଙ୍କର ଦ୍ୱିତୀୟ ସଂକଳନ 'ଆଶ୍ଚର୍ଯ୍ୟ ଅଭିସାର' ପ୍ରକାଶ ପାଇଥିଲା । କବିଙ୍କର ସମୁଦାୟ ୬୮ଟି କବିତା । ସଂଖ୍ୟା ଦୃଷ୍ଟିରୁ ଯେତିକି ବିସ୍ମୟକର ଗୁଣ ଦୃଷ୍ଟିରୁ ସେତିକି ଆଶ୍ଚର୍ଯ୍ୟ ଜନକ । ଏହି ବିରଳ ଅତୁଳନୀୟ କବିତା ଗୁଡ଼ିକୁ ଏକାଠି କରି ପ୍ରକାଶ କରିବା ପାଇଁ କବି ଅନୁମତି ଦେଇ-ଥିବାରୁ ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ । ଆଶା, କବିଙ୍କର ଅନୁରାଗୀ ପାଠକ-ପାଠିକାମାନେ ଆମ ଆନନ୍ଦରେ ସମଭାଗୀ ହେବେ । ଏହି କବିତାଗୁଡ଼ିକୁ ସଙ୍କଳିତ କରି ପ୍ରକାଶନରେ ସାହାଯ୍ୟ କରିଥିବା ଯୋଗୁଁ ଆମେ ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତିଙ୍କ ନିକଟରେ କୃତଜ୍ଞ ।

। ପ୍ରକାଶକ ।

# ସୂଚୀପତ୍ର

# ଚମ୍ପାଫୁଲ

ଚମ୍ପାଫୁଲ ମହକରେ ବାଟଭୁଲ ସମୁଦ୍ରର ଢେଉ
ଆସିଥିଲି କୂଳ ଡେଇଁ ଶୁଖିଥିଲା ଭଗ୍ନନଈ ସ୍ରୁଢ
ପଥର ତରଳି ଥିଲା, ମଶାଣିର ଭୂତପ୍ରେତ ସ୍ରୁଢ଼
ରଜବନ୍ଧ କନ୍ୟା ଲଗି ଯୋଗୀ ଥିଲା ମଦନରେ ମାଢ ।

ଚମ୍ପାଫୁଲ ହାତେ ଧରି ମନାସିଲା ଯାଦୁକରୀ ଥରେ
ପଥର ପାଲଟି ହେଲା ରଜାପୁଅ, ହାଡ଼ସବୁ ହେଲା ମୁକ୍ତାଫୁଲ
ରାଜଝିଅ ବେଣୀଫୁଲ ଝଡ଼ିଗଲା ଧୂଏ ଧୂଏ ଭାସି
ଗୋଟିଏ ଫୁଲରେ ପୁଣି ହେଲା କୋଟି ମଣିଷର ମୂଳ ।

ଚମ୍ପାଫୁଲ ମହକରେ ପଡ଼େ ସେ ଯେ ଦାରୁଣ କୁହୁକ
ରକ୍ତେଯାଏ ନିଆଁ ଲଗି, ସ୍ରୁଢ ଆଉ ନିଶ୍ୱାସରେ ନିଆଁ
ସ୍ରୁଢ ଆଉ ନିଶ୍ୱାସରେ ନିଆଁ ସେ ଯେ ଦେହେ ଦେହେ ବିଜୁଳି ଚମକ
ବିଜୁଳି ଚମକ ସେ ଯେ ବଣ ନିଆଁ, ସବୁଯାଏ ଛିନ୍ନଭିନ୍ନ ହୋଇ,
ପୃଥିବୀ ସ୍ରୁଢରେ ଲେଟି ପୋଡ଼ିଯାଏ ଜଣାଯାଏ ସବୁ
ମାଂସ ଫୁଟେ ଫୁଲ ହୋଇ ମନ ପଡ଼େ ରୋମାଞ୍ଚରେ ଶୋଇ ।

# କପୋତ କପୋତୀ

"ଏ ରାତର ଏତେ ତାରା ସ୍ମୃତିଆଣେ ତୁମସାଥେ ଯୁଗ ଯୁଗ ଅନାଦି ଯୁଗର
ତୁମର ପାଖରେ ବସି ମୁଁ ଖାବେ ହଠାତ୍ ଯଦି ବାଲିରେ ସ୍ମୃତି ବୁଣି ବୁଣି
ଏ ରାତ ବସ୍ତୁଇ ଦିଏ ସ୍ୱପ୍ନ ଆଉ ଯୁଗ ଯୁଗ କଳଙ୍କ କଳଙ୍କ ତାରା ଆଉ ତାରା
ତୁମର ଭ୍ରୂଲତା ତଳେ ମିଶିଯାଏ ଦିଗ୍‌ବଳୟ,
ରାଧାନାଥ ରାୟ ଆଉ ସଚ୍ଚି ରାଉତରା..."
ସେ କହିଲା, "ଏଣୁମୋର ସିଲ୍କ ଶାଢ଼ୀ ଆକାଶୀ ରଂଗରେ
ଆକାଶରୁ ଖସିଆସେ ତାରା ଆଉ ସଚ୍ଚି ରାଉତରା ।"

"ଏ ଅଂଧାର ଶୋଇପଡ଼େ ଜାକିଜୁକି ନିର୍ବିବାଦେ ନିଶବଦ ଘୋଡ଼ାଘୋଡ଼ି ହୋଇ
ନିଶବଦ ଚଇନି ଯାଏ ଗଳି ଗଳି ରାସ୍ତା ରାସ୍ତା ଘୋଡ଼ାଗାଡ଼ି ରିକ୍‌ସାଗାଡ଼ି ଚଢ଼ି
ଇଲେକ୍‌ଟ୍ରିକ୍ ଆଲୁଅରେ ସାବୁନ୍ ଆଉ ବାସ୍ନାତେଲ ଗୁଡ଼ାଖୁ ଓ ହଇଦର ବଡ଼ି
ଚୈନିର ସପନ ନେଇ ତୁମଠାରୁ ଇନ୍ଦ୍ରଜାଲ ନେଇ
ଗାନ୍ଧି ଟୋପି ପିନ୍ଧି ଚାଲେ ଏ ରାସ୍ତାରେ ଭିଡ଼ ଠେଲି ଠେଲି ।"
ସେ କହିଲା, "ଦୁଷ୍ଟ ତମେ ଦୁଷ୍ଟ ଭାରି ସତ ମିଛ କଥା କହିପାର
ଗ୍ରେରଫଣ ମୋ ପାଖରୁ ଅର୍ଥନୀତି ରାଜନୀତି ସୋସାଲିଜମ୍ କାଢ଼ିନେଇ ପାର ।"

"ଏ ରାତରେ ସୀମା ନଟଭ ଭଦ୍ରତାର ଶିଷ୍ଟତାର ଗାନ୍ଧିବାଦ
ସାମ୍ୟବାଦ ଆଉ ପ୍ରେମ କରିବାର ସୀମା
ରକ୍ତ ମିନା ପାଣି ଫାଟେ ତଥାପି ଆଖିରେ ଘୋଟେ ଖରନୋଇ
ଏ ରାତର ଫୁଲଭରା ବଜନ ନୀଳମା
ମୁଁ ଶୁଣେ ଅଦୃଷ୍ଟ ପାଦ ଶବ୍ଦ ଶବ୍ଦ ହଜିଯାଏ ପାଣି ଖୋଜ ମାଟି ଖୋଜ
ଏ ଦାଳର ଅନ୍ଧାର ଭିତରେ
ତଥାପି ଆଖିରେ ମୋର ଅପଲବ ଏ ଭୂଇଁରେ ନେଇ ସିଲ୍କ ଶାଢ଼ୀ
ଆଉ ତୁମର ଏ ବଜନ ନୀଳମା ।"

ସେ କହିଲା, "ଭଲପାଅ ଭଲପାଅ ସତେ ତୁମେ ଏତେ ଭଲପାଅ
ମୋ ପାଖରେ ବସି ସତେ ତୁମର ଏ ସିନସିଜମ୍ ଧୂପ ଆଉ
ହେମ ପୁଷ୍ପ ସବୁ ଭୁଲି ଯାଅ ।"

ମୁଁ କହିଲି, "ମିସ୍ ତୁମେ ଚିରନ୍ତନ ମିସ୍‌ବାସ୍ତ
ମିସ୍ ସବୁ ନଷ୍ଟିଲର ସପନ ଭିତରେ
ଆଜି ତେଣ୍ଣ ଆକାଶର ବାଦ ଆଉ ଏ ବାଲିର ଭିତରେ
ମୁଁ ତୁମକୁ ପ୍ରେମ କରେ, ଛଠିଲେଖେ, ତୁମର ମୁଁ ସମାଧାନ,
ତୁମର ମୁଁ ସମନ୍ୱୟ କରେ—
ତୁମର ବେଣୀରୁ ଦେଖେ ଚୈତ୍ର ଯାଏ ଭିଡ଼ ଠେଲି
ତୁମର ଆଖିରୁ ଆସି ଚୈତ୍ର ରୁରୁ ଭିଡ଼ ଠେଲି
ଅନ୍ଧଂସାର ଜିପ୍ ଗାଡ଼ି ଚଢେ ।"

ସେ କହିଲା, "ଦୁଷ୍ଟତୁମେ ଖାଲି ଗ୍ଲାଷ୍ ଖାଲି ଫାଜିଲ୍
ଖାଲି ଭଲକଥା କହିଜାଣ
ତୁମର ପ୍ରେମରେ ଆଜି ଭୁଲିଯାଏ ସତ୍ତ୍ୱ ମୁଁ ଅର୍ଥନୀତି ରାଜନୀତି
ଆଉ ମୋ'ର ନାରୀ ଜାଗରଣ ।

# ଭୋକର ଗଣେଶ

ରହିଯାଏ ଅଭାବ ତଥାପି
ବବର୍ଣ୍ଣି ବେଳାର ପରେ ଢେଉ ପରେ ଝଡ଼େ ଯେତେ ଢେଉ
ଜାଲର ପାଟଶ୍ରୀ ଯାଏ ଛନ୍ଦଜନ୍ମ ସମବୂଲ ଦ୍ୱୀପ ।
ପେଟର ଗୋଲାପି ରଙ୍ଗ ଏ ଆକାଶ ଶୋଷିଦେଲା ପରେ
ଯୋଡାର ଗୋଲାପି ଦୁଣୀ ଏ ଢେଉରେ ଭାଙ୍ଗିଗଲା ପରେ
ଜଳ୍ପୁଟିଆ ଗଳମୋଡ଼ ଗ୍ଲାସ ତାର ଗିଳିଦେଲା ପରେ
ରହିଯାଏ ଅଭାବ ତଥାପି,

ଏ ଛାତି ଭିତରେ ମୋର ନିଶ୍ୱାସରେ ଶ୍ୱାସ ପ୍ରଣାଳୀରେ
ମସ୍ତିଷ୍କ ଭିତରେ ମୋର ସବୁ ସୁଖ ସବୁ ଚେତନାରେ
ରହିଯାଏ ତଥାପି ଅଭାବ
ଝଡ଼ର ଓ ତୋଫାନର ବସନ୍ତରେ ଭୋଇଲ ଭାବର
ବବର୍ଣ୍ଣି ବେଳାର ଢେଉ ଏ ମନରେ ଗୋଟିଏ ପ୍ରଶ୍ନର

ଆଜି ଯେବେ ସନ୍ଧ୍ୟାବେଳେ ପଞ୍ଚସବୁ ଝଡ଼ି ଝଡ଼ି ପଡ଼େ
ଜଳ୍ପୁଟିଆ ଏ ଗଳାରୁ ସନ୍ଧ୍ୟାଯାଏ ଲୁଚି ଲୁଚି ଛପି ଛପି
ପ୍ରେମିକର ପରି,
ମୁଁ ବସେ ଝରକା ପାଖେ ଜାକିଜୁକି ଗୋଲକରି
ରଖି ମୋର ଛାତି ପକେଟରେ,
ମଲାସ୍ୱାର ଚମ୍ପାକଡ଼, ଶାଢ଼ୀ ତାର ବ୍ଲାଉଜ ତାର
ଗୋଲ ଛାତି କଳାଆଖି ତାର,
ରୁମାଲରେ ଜାକିଜୁକି ମନମୋର ଦେହମୋର ଆତ୍ମାମୋର
ମୋ ପ୍ରିୟ ରୁଷକାର ;

ପଞ୍ଜରରୁ ଝଡ଼ି ଝଡ଼ିଯାଏ
କଳୁଷିଆ ଏ ଗଳାରେ ସାଉଁଟି ସାଉଁଟି ଧୂଳି ମନମୋର
ଦେହ ଖୋଜିଯାଏ
ଦେହମୋର ପ୍ରାଣ ଖୋଜିଯାଏ ।

ଆଖିତାର ଗାଢ଼ କଳା !
ଝୁମ୍ପୁକଳା ଅଳକ ମୋ ଠାରେ
ଗୋଲ୍ ତାର ସ୍ତନତଳେ ବସନ୍ତ ବା ପଦ୍ମ ଭଙ୍ଗିମାରେ
ମୋ ଠାରେ ଆକାଶ ଠାରୁ ବହୁଦୂର ବସନ୍ତ ସୁଦୂର ।

ଆଜିପୁଣି ମତେ ଲାଜମାଡ଼େ
ଆଜିପୁଣି ଚମକି ମୁଁ ଅଟକା ହୋଇ ବସେଁ ଝରକାରେ
ମୁଠାରେ ଦେବାକୁ ଝୁମ୍ପି ଏତେ ଗଳି ଏତେ ଛକ ଏତେ ଶାଢ଼ୀ ଦାମୀ
ଗହଣାରେ
ଥିଏଟର ସିନେମାରେ ସବୁ ସିଟ୍ ସବୁ ଟେବୁଲ ସବୁ ହୋଟେଲର,
ଆଜିପୁଣି ମତେ ଲାଜମାଡ଼େ,
ଆଜି ପୁଣି ଅକ୍ଲାନ୍ତ ମୁଁ ଚେଷ୍ଟାକରେ ହେବାକୁ ଚକ୍‌କଣ
ରୁମାଲରେ ମୁହଁ ପୋଛେ ପଞ୍ଜାବୀରେ ଲଗାଏ ଅତର
ଆଗରେ ଆରଶି ରଖି ମୁଲାଏମ ହସିବାକୁ ଶିଖେ ।

ମୁଁ ନୁହେଁ ଧୂପର ହିରୋ, ଗାର୍ଲସ୍କୁଲ୍, ଟ୍ରମ୍ବନ, ବା ଟମ୍ବୁର ନାୟକ
ଗୁଚ୍ଛୁକଳା ଅଳକ ମୋ ଠାରେ
ତାର ସିଲକ ଲୁଗାତଳୁ ଗୋଲ ସ୍ତନ ଯେବେ ଭଙ୍ଗିମାରେ ।

ଧନୁରେ ମୁଁ ପୋଷିନାହିଁ କାଗଜ ବା ନୋଟନ ସାୟକ
ମୁଁ ଜାଣେନା ବିକାହୁଏ କଟକର କେଉଁ ଦୋକାନରେ
ପ୍ରେମର ପ୍ରଥମ ଫୁଲ ନିଳୋତ୍ପଳ ବକୁଳ ଅଶୋକ,
ନାଟର ଦୂତ ମୁଁ ମୋର ନଣ ମୋଡ଼ମାଡ଼ ଧରି ଛୋକ ଗିଲି ଗିଲି
ଆଣିଦେବା ପ୍ରିୟାର ଖବର
ଥିଏଟର ସିନେମାରେ ନୂଆ ଫେସନ ଶାଢ଼ୀ ବ୍ଲାଉଜର
ଖୁବ୍ ବେଶୀ ହେଲେ କେବେ ଟେଲିଫୋନ କିମ୍ବା ଡାକଘର ।

ମୁଁ ଯଦି ହଠାତ୍ ଦିନେ ଜଳିଯାଏ
ଏ ଆକାଶ ଯଦିଯାଏ ଆଖିରେ ମୋ ସଙ୍କୁଚିତ ହୋଇ
କାଣ ଯାଏ ଭଲହୋଇ ଆଖିରେ ମୁଁ ଲଗାଏ ଚଷମା
ତା ଚଷମା ଭିତରକୁ ସିଧାହୋଇ ଅନାଇବା ପାଇଁ
ସମୟକୁ ଜାକଜୁକ ସମସ୍ୟାରେ ଗୁପି ଦେବାପାଇଁ
ମୁଁ ଯଦି ଚରଟେ ଆଖି, ମୁଁ ଯଦିବା ନଣଦାଣ୍ଡି ରଖେ, ମୁଁ କହେ ତାହାକୁ
ମୁଁ ପଢ଼ିଛି ଉପନ୍ୟାସ, ମୁଁ ପଢ଼ିଛି ଇଂରାଜୀ ନାଟକ
ମୁଁ ଜାଣିଛି ଏ ରକ୍ତରେ ଶୋଇଥାଏ ଆଦିମ ଅସଭ୍ୟ

ମୁଁ ଜାଣିଛି ହଜିଥିବା ରୁମାଲରୁ ଲୁଚି ଉଠେ ରକ୍ତମୁହାଁ ହୋଇ
ମୁଁ ଜାଣିଛି ବାଘ, ଭାଲୁ, ନଖ ଆଉ ଦାନ୍ତର ବଗିର,
ସେ ଯଦି କୋଦିଲ ହସେ
ସେ ଯଦି କେବଳ
ପାପୁଲିରେ ମୁହଁ ରଖି ସାବଲିଲ ଗ୍ରୀବାଭଙ୍ଗି କୁରଙ୍ଗର ଦଣ
ସେ ଯଦି କେବଳ କୁହେ ଭୁଲ୍ ସବୁ, ଗଧ ତୁମେ,
ବୋକା ତୁମେ; ଓଲୁ ତୁମେ
ଗୃହିଣୀର ଭେଳିକି ତୁମର
ସେ ଯଦି ଝରଣା ଯାଏ ହସି ହସି ଲେଟି ତାର ବିଛଣା ଉପରେ
ଛେପ ଢୋକି ତଣ୍ଟି ଶୁଖିଯାଏ ।

ଆଖି ତାର ରହିଥିବ ଓଠ ତାର ଥିବ ଗୋଲ ହୋଇ
ସିନେମାକୁ ଯିବା ତାର କେବେହେଲେ ବନ୍ଦ ହେବ ନାହିଁ
ରୁମାଲରେ ମୁହଁ ପୋଛୁ ଆଉ ମୋର ସନ୍ଧ୍ୟାର ଅପେକ୍ଷା
ନମସ୍କାର କାଲି ପୁଣି
ରିକ୍ସାଭଡ଼ା କମ୍ ହେବ ନାହିଁ ।
ଆଜି ଏଇ ସନ୍ଧ୍ୟାବେଳେ ପଞ୍ଜରରୁ ଝଡ଼ି ଝଡ଼ି ପଡ଼େ ପଞ୍ଜରଡ଼ା ଅମିସିବ ନାହିଁ ।

ଏ ମୋର ମନର ତଳେ ଏ ସହର ଯଦି କେବେ ଅମିଯାଏ ରହିଯାଏ
ଅକସ୍ମାତ୍ ସ୍ଥିର ହୋଇ ସ୍ତମ୍ଭୀଭୂତ ହୋଇ
ଏ ହାତ ଉପରେ ମୋର ଅକସ୍ମାତ୍ ଲୁଚିଯାଏ ହଠାତ୍ ସମସ୍ତ
ଏ ହାତ ଉପରେ ମୋର ଟିକ୍ ଟିକ୍ ଶବ୍ଦଯାଏ ହଠାତ୍ ଉଭେଇ,
ମୁଁ କହିବି ଶୁଣୁଚ ହୋ ଗୋଟେ କଥା ପଚାରିବି ଆଜି

ଜାଣିଚଛି କୁମ୍ଭୀପାକ ନରକରେ ଅପଟାର ଦଶା
ଜାଣିତଛି ପରିଣାମ ରତ ହେଲେ ପରପୁରୁଷରେ
ଦାନ୍ତ ମୋର କଣ୍ଟାଳିଆ ଯଦିଚ ତା ଫୋଡ଼ି ହୋଇଯାଏ ।
ଶିମିଳି ଗଛର କଣ୍ଟା ବେଣୀ କନ୍ଦୁ କାଟିବ ଗାଲକୁ ଛିନ୍ନ ଭିନ୍ନ ନାଭି କମଳକୁ ।

କାଠଯୋଡ଼ୀ ବନ୍ଧ ଖୁଞ୍ଚି ତଡ଼ିଦେବ କଟକ ସହର
ମୁଁ ଚାଲିବ ପୁଅ କାନ୍ଧି—ଗ୍ରୀବ ତାର ଥିବ ଗୋଲ ହୋଇ
ଦେହର ବିକୃତ ମୋର ମନର ବିକାର ।

ଆଜ ସନ୍ଧ୍ୟା ଗ୍ରୀବତଳେ ଗୋଟି ଗୋଟି ପଦ୍ମ ଝଡ଼ିପଡ଼େ
ମୁହୂର୍ତ୍ତି ମୁହୂର୍ତ୍ତି ଯାଏ ଚୁପିହୋଇ ଏ ସନ୍ଧ୍ୟାରେ ମୁଠା ଭିତରକୁ
ପଶ୍ଚିମରେ ଟେଣୁ ଗାଢ଼ସବୁ
ଘନୀଭୂତ,
ଝରକା ପାଖରେ ମୋର ସଇନାହିଁ ତଥାପି ଅପେକ୍ଷା
ସାଢ଼େ ଦଶ ବାଜି ହୋଇନାହିଁ
ସେ ଫେରି ଆସିବ ଧୀରେ ତା ଯୋତାର ଶବ୍ଦ ପାହାଚରେ
ତା କାନର ଦୁଇ ପରେ ଝିକମିକ ରୂପାର ଆଲୁଅ ।
ତା ଓଠର ଆଉଁଆଳେ ଝିକିମିକି ଶହ ଶହ ତାରା
ଆଉ ତାର ନମସ୍କାର ଆସିବ କାଳିକ,
ମୁଁ ଚାହିଁବ ତା ଓଠକୁ, ବ୍ଲାଉଜ ତଳକୁ
ଖୋଜିବାକୁ, ଛୁଇଁବାକୁ ଲୁପ୍ତ ସେଠି ଯେତେ ଇତିହାସ
ଘଣ୍ଟାକ ଆଗରୁ
କାଠଯୋଡ଼ୀ ଡେଉ ଡେଇଁ ଆସିନାହିଁ କଟକ ସହର ।
ମନର ବିକୃତ ମୋର ଏଇ ଦେହ ମନର ବିକାର
ଏ ଆଖି ଆଗରେ ମୋର ଗୋଲ ତାର ଗ୍ରୀବର ସମ୍ଭାର ।

ମୁଁ ଦେଖିଛି ସନ୍ଧ୍ୟା କେତେ ମ୍ଳାନ ହୋଇ ଯାଇଛି ମିଳାଇ
ପଦ୍ମ କେତେ ଝଡ଼ି ଝଡ଼ି ସମସ୍ତଙ୍କୁ ଡାକିଛି ଗୋଡ଼ାଇ
ଆରଶିରେ ମୁହଁ ଦେଖି ମୁଁ ମାପିଛି କେତେ ଗାଢ଼ହୋଇ
ଆଖି ମୋର ଲୁଚିଛି କେଉଁ ରଡ଼
ମୁଁ ଦେଖିଛି ତୋଫାନ ଓ ଝଡ଼

॥ କବିତା ସମଗ୍ର-୭ ॥

କାଠଯୋଡ଼ୀ ସ୍ମୃତି ଖୋଲି କେତେ ବାଲି ଦେଇଛୁ ଉଡ଼ାଇ
ତା'ପରେ ସମାନ ସବୁ ସମତୁଲ ନିର୍ଦ୍ଦିଷ୍ଟ ନଗୋଲ
ସବୁ ଭୁଲ ସବୁ ଠିକ୍ ମୂର୍ଚ୍ଛା ହୋଇ ପଡ଼ିଅଛୁ ଶୋଇ,

ମୁଁ ତାଙ୍କୁ ପଚ୍ଛର ନାହିଁ କରି ନାହିଁ କେବେ ମୁଁ ସାହସ
ମୁଁ ଗଣିଛୁ ଗୋଟି ଗୋଟି ପତ୍ରଝଡ଼ା ମିନଟ୍ ହାତରେ
ଛୁଇଁଛୁ ମୁଁ ଗୋଲ ସ୍ମୃତି ତା'ର
ବୁଝିଛୁ ମୁଁ ଭ୍ରମରର ଲୋଭ
ତଥାପି, ତଥାପି କିଛୁ ଆଜଯାଏ ହୋଇନ ସମ୍ଭବ ।

ଫିଲମ୍ ସରି ନାହିଁ
ଖଟ୍ପାଉଡ଼ା କମି ନାହିଁ, ଏ ହାତ ଉପରେ ମୋର ମିନଟ୍କଣ୍ଟା ଥମିଯାଇ ନାହିଁ
ମୁଁ ବୁଝିଛୁ ଝରକାରେ ପତ୍ରସବୁ ଝଡ଼ି ଝଡ଼ି ଯାଏ
ପତ୍ରଝଡ଼ା ଥମିଯାଇ ନାହିଁ ।

ଏ ଗଳିରେ ଜହ୍ନ ଆସେ, ଝରକା ସେପାଖେ ଶୁଭେ ଚଇତର ଗୋପନ ନୂପୁର
ଧୂଳିର ଭଉଁଙ୍କ ଖେଳ କେତେ ଫୁଲ ଲେଟେ ମହକରେ
କେତେ ବେଣୀ ଫିଟିଯାଏ କେତେ ତାରା ଝଡ଼େ କୁହୁକରେ ।
ମୁଁ ଶୁଣେ ପତରର ସ୍ମୃତି ଛନକାଇ ଚହଲାଇ ନିଭିଯାଏ ହଜିଯାଏ କୁଳ
ଚଇତର ବିମନା ନୂପୁର ;

ମୋ ପାଇଁ ଚଇତ କେବେ ଯାଇନାହିଁ ପତର ଥରାଇ
ମୋ ପାଇଁ ଗଳିର ମୋଡ଼ କେବେହେଲେ ଚେଇଁ ଉଠି ନାହିଁ
ଯେତେ ଯୁକ୍ତି ତର୍କ ଯେତେ ସବୁ ବାଦ ପ୍ରତିବାଦ ପରେ
ମୋ ପାଇଁ ଯାଇଛି ରହି ଯୁକ୍ତି ଆଉ ବିଯୁକ୍ତି ମୀମାଂସା
ଏକମାତ୍ର ସମାଧାନ ମୋର,

ମୁଁ ଏଠି ଚମକ ଦେଖେ ପତ୍ର ଝଡ଼େ ଥୁଣ୍ଟାଗଛ ଛିଡ଼ାହୋଇ ରହେ
ଢେଉ ପରେ ଢେଉ ଗିଳି ସମସ୍ତର ଆଖିଠାର ମାରି
ତା ଓଠର ଫାଙ୍କପରି ପଡ଼ିରହେ ଏହି ଗଳି ମୋଡ଼ ।



।। କବିତା ସମାପ୍ତ ।।

# ପ୍ରିୟବାନ୍ଧବୀ

ପଉଷ କୁହୁଡ଼ି ଆସେ ସ୍ୱପ୍ନପରି ଘାରି ଧାନକ୍ଷେତ
ନିର୍ଜନ ବାଲିର ଚରେ ଜହ୍ନ ଯେବେ କ୍ଲାନ୍ତ ହୋଇ ନଇଁ
ଗହନ ରାତିର ଆୟୁ କ୍ରମେ କ୍ରମେ କ୍ଷୟ ହୋଇ ଆସେ
ଯେତେବେଳେ ନଈପଠା ଶେଷଥର କରି ଲେଉଟାଏ ।

ସେତେବେଳେ କେତେଥର ତୁମର ମୁଁ ପାଇଛି ବା ଦେଖା
ବିଷଣ୍ଣ ନଈର ତୁଠେ ଝରି ବେଣୀ ଫିଟିଗଲାବେଳେ
ତୁମର ଅସ୍ପଷ୍ଟ ଛାଇ ତୁଠେ ତୁଠେ ଛପିଗଲାବେଳେ
ସେତେବେଳେ ତୁମର ମୁଁ ଦେଖିଛି ବା ସନ୍ଦେହର ଦେଖା ।

ସେ ହେଲା ପୁରୁଣା କଥା ଯେତେବେଳେ ଅଲଗା ଥିଲା ଦିନ
ଆଉ ଥିଲା ଆକାଶରେ ରକ୍ତସ୍ରାବ ପଉଷ ସନ୍ଧ୍ୟାର
ତୁମେ ପୁଣି ଯାଉଥିଲ ବାଲିଚର ପାରିହୋଇ ନିତି
ଆଜି ପରି ଅସଂସ୍କୃତ ଅସମ୍ଭୂତ ଭ୍ରାନ୍ତ ସନ୍ଧିହୀନ ।

ଧାନକ୍ଷେତ ନଇଁପଡ଼େ ଶୀତଋତୁ ବୁଢ଼ାହୋଇ ଆସେ
ନିଛାଟିଆ ଆକାଶରେ ତାଳ ନାହିଁ ପକ୍ଷୀର କାକଳି
ତୁମେ ଆଉ ଆସିନାହିଁ ଏ ବାଟରେ ଥରେ ହେଲେ ଭୁଲି
ନିଶବ୍ଦ ବାଲିଚରରେ ଯେବେ ଯାଏ ପବନ ଘୁମରି ।

ତୁମେ ଆଜି ଥରେ ଆସ ଯଦିଚ ବା ସବୁ ମୂର୍ଚ୍ଛାହତ
ଏଇ ଗଛ ବଣଲଟା ଆଉ ଢେଉ ଆଉ ବାଲିଚର
ଆକାଶରେ ଜହ୍ନ ଯଦି କ୍ଲାନ୍ତ ପୁଣି ଆବଶ୍ୟକହୀନ
ମୁଁ ତୁମର ଅପେକ୍ଷାରେ ପ୍ରଶ୍ନମଗ୍ନ ପୁଣି ସନ୍ଧିହୀନ ।

ତୁମେ ଯଦି ମିଛକଥା, ତୁମେ ଯଦି ବନ୍ଧ ଦୋକାନରେ
ଆଧୁନିକ ପ୍ରେମ ଗଳ୍ପ, ତୁମେ ଯଦି ରେଡ଼ିଓ ଖବର
ତୁମେ ଯଦି ଫିଲ୍ମ ଗୀତ ଆର୍ଡ଼କ୍ଲାସ ରେଲ ଟିକେଟ ଘର
ତୁମେ ଯଦି ବଜାରରେ ଲୁଗା ଚନା ଗ୍ରେଣ୍ଡ କାରବାର……

ମୁଁ ପଢେ ଖବର ସବୁ, ବୁଢ଼ା ହୋଇଯାଏ ଶୀତରରୁ
ରଙ୍ଗସବୁ ଗ୍ରୁଡ଼ିଲଣି ବେକଠାରୁ ଛିଣ୍ଡାଲୁଗା ଭଙ୍ଗା କୋଠାଘର
ଧାନକ୍ଷେତ କାହିଁ କେଉଁ ସ୍ମୃତିଟିକେ କେଉଁ ଅନ୍ତରର
ଏଠି ମୋର ବୃଶପାଖେ ବାଲିଚର ଖାଲି ବାଲିଚର ।

ବାଲିରେ ମୁଁ ବୁଲିଯାଏ ସନ୍ଧ୍ୟାବେଳେ ଆଜକାଲି ବିବର୍ଣ୍ଣ ସନ୍ଧ୍ୟାରେ
ଏହି ବାଲି ଚରେ ଚରେ ମୁଁ ଦେଖେ ବହୁତ ଲୋକ
ନାଲିନେଳି ବହୁତ ରଙ୍ଗର
ନକ୍ସାଟିଆ କେତେବେଳେ ଦୀର୍ଘଶ୍ୱାସ ଜମିଆସେ ଆଉ ଯେତେ ବୃପି ହୋଇଆସେ
ଏ ବାଲିରେ ସବୁ ଗ୍ରନ୍ଥ ଦୁହିଁ ହୋଇ ହୁଏ ଏକାକାର ।

ତୁମେ ଆସ ଆଜିଆସ ମିଲଲୁଗା ପାଲଟି ଦେହରୁ
ବନାରସୀ ସିଲ୍କ ପିନ୍ଧି ସେ ଦେହରେ ହଳଦୀ ଲଗାଇ
ଚମ୍ପାଫୁଲ ବେଣୀ ମୂଳେ, ଚନ୍ଦ ଲେଖି ଗ୍ରନ୍ଥ ଯୋଡ଼ିକରେ
ତୁମେ ଆସ ଆଜି ଆସ ମାଟିରୁ ବା ଆକାଶ ଉପରୁ ।

ଯେତେ ବାଲି କୁଢ଼ହୁଏ ଯେତେ ଦେହ ଜଳିପୋଡ଼ି ଯାଏ
ତୁମେ ଆସ ତା'ଭିତରୁ ଯେତେ ଯାହା ଅଭଦ୍ର ଅଶ୍ଳୀଳ
ତୁମର ଓଠରୁ ତଳେ ଟୋପା ଟୋପା ଝରାଇ ଝରାଇ
ତୁମେ ଆସ ସନ୍ତାପ ବା ପୁଞ୍ଜୀଭୂତ ଯେତେ ବ୍ୟଭିଚାର,

ରାତି ଧୀରେ ଗାଢ଼ହୁଏ ଦୂରର ଏ ଝାଉଁବଣ ଆଢ଼େ
ଚେର ସବୁ ଶୋଷିନିଏ ପ୍ରାଣପଣେ ଏ ବାଲିର ଗ୍ରନ୍ଥଟିକୁ ଦାବି
ଏ ନିଶବ୍ଦ ବାଲିଚରେ ଜନ୍ମ ନାହିଁ ତାରା ନାହିଁ ଯେବେ
ମୁଁ ଆଣୁଛି ତୁମପାଖେ ମାଟିର ମୋ ଜନ୍ମାନ୍ତର ଦାବି

ତୁମେ ଆଜି ଏଠି ଅବା ବାରାଣସୀ କାଶୀ ନଗରରେ
କାଲରେ ତୁମର ପାନ, କିମ୍ବା ଗୋଲ ନାଗୁଡ଼ିଆ ଆଣସି ସାମ୍ନାରେ
ମୁହଁରେ ତୁମର ସ୍ନୋ ; କିମ୍ବା ଯେତେ ଚେତନାର ସୀମା ପାରହୋଇ
ହୃଦରେ ପଡ଼ିଚ ଶୋଇ ତନ୍ଦ୍ରାହତ କେଉଁ ଅନ୍ତ ବନସ୍ତ ଭିତରେ ।

ମୁଁ ତୁମକୁ ପାରେ ଦେଖି ଆଜିଠାରୁ କେତେ ବର୍ଷ ପରେ
ଅପଲ୍ଲବ ସମସ୍ତର ଗୁଛତଳେ କୁଢ଼ କୁଢ଼ ଉଚ୍ଛିଷ୍ଟ ଉପରେ
ହାଡ଼ରୁ ପଡ଼େ ମାଂସ ଖସି, ଖୋଲା ହୋଇ ଆଖି ହୁଏ ଗାଡ଼
ତା ଭିତରେ ଲମ୍ବପାଏ ପ୍ରାଣ ମୋର ଆତ୍ମା ମୋର ଆଉ ମୋର
ମାଟିର ଆକାର ।

ଗଛର ଉପରେ ଯାଏ ଗୁଡ଼ି ଡେଇଁ କିଆ ବଣ ବେତଲଟା ମୂଳେ ।
ଗୁଡ଼ି ଯାଏ ଛପି ଛପି କାଠଯୋଡ଼ୀ ବାଲିଚର, କିମ୍ବା ପୁରୀ
ସମୁଦ୍ର କୂଳରେ ।

ରାତି ଯାଏ ଝଣ ଝଣ ଆମର ଏ ଦୋକାନ ବଜାରେ
ସ୍ୱପ୍ନଯାଏ ଉଙ୍କିମାରି ଗଳି ଗଳି କୋଠା ସନ୍ଧିତଳେ ।

ମୁଁ ତୁମକୁ ଭଲପାଏ ଚନ୍ଦ୍ରଶାଳୁ ଭଲ ପାଉଥିଲି
ସିଂହଳ ଦ୍ୱୀପର ସ୍ୱପ୍ନ ମୁଁ ଯାଉଛି ଭଣିବାକୁ ଯେବେ
ଲବଙ୍ଗ ବଣରେ କଥା, କିମ୍ବା ବ୍ୟଥା କଦମ୍ବ କାଢ଼ର
ମୋ ଆଖିରେ ଅବାସ୍ତବ ପାଲଟିଚ ଏ ସହର ତେବେ ।

ଲାବଣ୍ୟବତୀରୁ ତୁମେ ଅବା ରସକଲ୍ଲୋଳରୁ
କୋଣାର୍କ କାନ୍ଥରୁ ଅବା ସିନେମାର ପରଦା ଭିତରୁ
ମୁଁ ତୁମକୁ ଭଲପାଏ ଚନ୍ଦ୍ରଶାଳୁ ଭଲ ପାଉଥିଲି
ମୋ ପାଖେ ସିଂହଳ ଦ୍ୱୀପ ଯାତ୍ରା କିନ୍ତୁ ଅସମ୍ଭବ ହୁଏ ।

ତୁମେ ଯେବେ ଆସ ଆଜି ନାଗୁଡ଼ିଆ ଏ ଯେ ଜନହୀନ
ବାଲିଚର ଖୋଲା ଖୋଲା ଚେର ଯେତେ ପଶେ ଭିତରକୁ
ଆଜି ରାତି କୋହ ହୋଇ ମିଶିଯାଏ ବିରାଟ ଶୂନ୍ୟରେ
ତୁମେ ତେବେ ଆସ ଆଜି ବାସ୍ତବ ବା ସ୍ୱପ୍ନ ଆକାରରେ ।

॥ କବିତା ସମଗ୍ର-୧୧ ॥

ମୁଁ ତୁମକୁ ଭଲପାଏ ତୁମେ ଦେବ ଚିଠିର ଜବାବ
ତୁମେ ପୁଣି ଫେରିବ ବା ଏନ୍ଥ ରେଲ ଲାଇନ ବାଟରେ
ତୁମେ ପୁଣି ଦେଖାଦେବ ନଗ୍ରୁଟିଆ ବାଲି ଚରେ ଚରେ
କେଉଁ ଅସ୍ତ ଜହ୍ନତଳେ ଅବା କେଉଁ ସ୍ୱବର୍ଣ୍ଣ ସନ୍ଧ୍ୟାରେ ।

ତୁମରି ଦାନ୍ତରେ ମୋର ଓଠ ଯିବ ଛିନ୍ନ ଭିନ୍ନ ହୋଇ
ତୁମର ଗ୍ରୀଢରେ ଯିବ ଦଳିହୋଇ ବାଲିଚର ନିର୍ଜନ ନିଘଞ୍ଚ
ତୁମର ଦେହର ରକ୍ତ ପାଣିଫାଟି ଥଣ୍ଡା ହୋଇଯିବ
ତୁମର ଭିତରେ ମୋର ଆତ୍ମା ଯିବ ନିଶ୍ଚିହ୍ନ ମିଳାଇ ।

ମୁଁ ତୁମକୁ ଭଲପାଏ ପ୍ରାଣପାତ କରି ମୋର ଦେହ ମୋର ବିସର୍ଜନ କରି
ଆଜି ରାତି ଥଣ୍ଡାହୁଏ ଯାକି ହୋଇଆସେ ଦର୍‌ବଳସ୍ତ
ଭିତ୍ତିହୀନ ତୁମେ ମୋର, ଆଉ ମୋର ଜୀର୍ଣ୍ଣ ସତ୍ତ୍ୱ ପୋତି
ଅନ୍ତରର ଯୁକ୍ତିହୀନ ମାଡ଼ିବସେ ଦୁର୍ନିବାର ସମସ୍ତ ସମସ୍ତ ।



# ଶରତ ଋତୁରେ ଜହ୍ନ

ଶରତ ଋତୁରେ ଜହ୍ନ ଯାଏ ଆଜ ଆସ୍ତେ ଯାଏ
ତେଇଁ ତେଇଁ ଗ୍ଲେଟ ଗ୍ଲେଟ ବଉଦର ପିଢ଼ି
ଏତେବେଳେ ଚକ୍ରବାକ ବୋଧହୁଏ କାନ୍ଦୁଥିବ
ଏତେବେଳେ ବଛଣାରେ ନଦ ଭଙ୍ଗି ଆସୁଥିବ ଲବଣୀବଣର···
ଏତେବେଳେ ଆକାଶରେ ନେଶି ହୋଇଯାଏ ଝାଉଁବଣ
ଏତେବେଳେ ଲୁଣଖିଆ ଇଟାକାଠ ସିମେଣ୍ଟ ଲୁହାରେ
ଏଠି ମୋର ଗୃହପାଖେ ଖସ୍ତୁପାଏ ଖସ୍ତୁପାଏ
ନିର୍ବିବାଦେ ଘଉର ଜୀବନ ।

ଚକ୍ରବାକ କାନ୍ଦେ ବୋଲି ସମୁଦ୍ରରେ ଜହ୍ନଘଉ ହେଲେ
କେତେଥର ଦେଖିଚ ମୁଁ କାଶଫୁଲ ଭଙ୍ଗେ ଆସି ତେଉ
ଏ ବାଲିରେ ବୁଲି ବୁଲି ମୁଠା ମୁଠା ଶାମୁକା ଗୋଟାଇ
କେତେଥର ଖୋଜିଚ ମୁଁ ଜହ୍ନଘଉ ଧନ ଆଉଁ ଆଉଁ ।
ଶରତ ଋତୁରେ ଜହ୍ନ ଯାଏ ଆଜ ଆସ୍ତେ ଯାଏ, ଚକ୍ରବାକ
ବୋଧେ କାନ୍ଦୁଥିବ
ମୁଁ ତା'ର ରେଖାର ସ୍ୱପ୍ନ ଆଜି ପୁଣି ଚେଷ୍ଟା କରେ
ଏ ଜହ୍ନର ଫିକା ଶ୍ୟାଡୁ ଗୋଲ ଗୋଲ ଆଙ୍କି ରଖିବାକୁ ;

ଶିଥିଳ ଅନ୍ଧାର ତଳେ ପବନ ଉଡ଼ାଇ ଯାଏ ଜୀର୍ଣ୍ଣ ଛିନ୍ନ ପତ୍ର ସବୁ
ଧୂଳିମଳି ଖବର କାଗଜ,
ଅତର୍କିତ ତା ଶବରେ ମୁଁ ଗୁହିଁଚ କେତେଥର
ଭୁଲିପଡ଼ି ତା'ର ବ୍ୟସ୍ତ ଉତ୍ୟକ୍ତ ଓଠରୁ ଜନରବ ସ୍ୱାମୀ ଅବା
ମୋର ମାଂସ ହାଡ଼ ତଳେ ସମସ୍ତ ବା ପ୍ରେମର ଦରଜ ।

ଶରତ ଋତୁର ଜହ୍ନ ଆଜ ରାତ କଥାବୁଝେ ଘୂର୍ଣ୍ଣି ମୋର ସାଇକେଲ୍ ଚକ୍ର
ବ୍ରେକ୍ ଦେଇ ଧୀରେ ଧୀରେ କୋଠାଘର ଛାଇରେ ଛାଇରେ।
ମୁଁ ଗିଦ ନଦେଇ ବେଲ୍ ରାସ୍ତା ଘାଟ ଗଳିରେ ଗଳିରେ
ଦୁଏକ ଓଠରେ ତା'ର ଏ ଜହ୍ନର ସ୍ମୃତି ଥିବ
ଖୁସି ହୋଇ ଉଚ୍ଛ୍ୱସ ରୂପ ହୋଇ ବରଷର ଗୀତ
ମୁଁ କହିବ ତା କାନରେ ଏ ଜହ୍ନ ରାତରେ ଆସ
ତୁମେ ମୁଁ ଆମେ ଦୁହେଁ—ଆକାଶ ଓ ମ୍ଳାନ ନଇବାଲି,
ତୁମେ ଆଉ ମୁଁ ଦୁହେଁ, ଭକ୍ତ ଆଉ ମାନସିଂହ ରାଧାନାଥ ପଢ଼ି
କିଛି ଦୂର ମିଳାଇ ଯିବା ସ୍ୱାମୀ ଆଉ ଜନରବ ଛାଡ଼ି।

ଚକ୍ରବାକ ଡାକି ଡାକି ମରିଯାଏ ଆକାଶର ତଳେ
ସମୁଦ୍ରର ଢେଉ
ଧାଡ଼ି ଧାଡ଼ି କାଣ୍ଟେଲ୍ ଠେଲି ଆଣି ଫିଙ୍ଗିଦିଏ ଏକତ୍ରିତ
ସମୁଦ୍ର ବାଲିରେ
ତା ଓଠ ଭିତରୁ ବାଲି ଧାଡ଼ି ଧାଡ଼ି ଦେଖାଯାଏ
ଶରତ ଋତୁର ଜହ୍ନ ଯାଏ ଯେବେ ମରିଯାଏ ଏ ରାତରେ ଅମୃତ୍ରା ଗଳିରେ,

ସମୁଦ୍ର ବାଲିରେ ଜହ୍ନ ଆଜ ଦୁଏ ଏକତ୍ରିତ
ଆକାଶରେ ମେଘ ଆଉ ମେଘ
ଜହ୍ନ ଯାଏ ତା ଭିତରେ ମରି ହଜି ନିର୍ବିବାଦେ
ସମୁଦ୍ର ବାଲିରେ ସ୍ୱପ୍ନ କାହାର ବା ଚେତନା କାହାର

ତୁମେ ଆଜ ଶୋଇପଡ଼ ଜହ୍ନରାତ ଆସ୍ତେ ଖସି ଯାଉ
ଜାକିଜୁକି ହାତ ଗୋଡ଼, ମୁହଁ ପୋତି ତକିଆ ଭିତରେ
ତୁମର ହତ୍‌ଭ୍ରାନ୍ତ ମନ ସ୍ଥିର ହୋଇ ଛପିଯାଉ, ଚୁପଚାପ୍
ଆପେ ଛପିଯାଉ।

ଏ ଜହ୍ନରେ ବ୍ୟଥା ନାହିଁ ଗୋପ୍ୟ କଥା ନାହିଁ ପୁଷ୍ପଶର
ଏ ବାଲିରେ ସୃଷ୍ଟି ଲକ୍ଷ୍ୟ ଯେତେ ଚେଷ୍ଟା ସେତେ ମନସ୍ତାପ .
ଅଛି ଯେବେ କାଣ୍ଟେଲ୍ ଠେଲି ଆଣି ଫିଙ୍ଗିଦିଏ ଢେଉ

ସ୍ୱପ୍ନାତୁର ପଥଭ୍ରାନ୍ତ ଭ୍ରମର ଏ ଉତ୍ତେଜିତ ମନ
ଏ ନିଃଶବ୍ଦ ବାଲିଚରେ ଯୋଡ଼ ଯୋଡ଼ ଚଟିର କାଗଜ
ଭଙ୍ଗାରୁଣ୍ଠା ସ୍ମୃତ ଯୋଷି ଆଜି ଖୋଜେ ଅର୍ଥକାର
କେଉଁ ସୁପ୍ତ ପୃଥ୍ୱୀ ବା କେଉଁ ଲୁପ୍ତ ଆକାଶ ସନ୍ଧାନ



# ସୁନାର ଝରଣା

ହସି ହସି ଝରିଗଲା ସିମେଣ୍ଟର ଚଟାଣ ଉପରେ
ସୁନାର ଝରଣା ;
ସେତେବେଳେ ଏ ଗଳାରେ ଖରାଥିଲା ପୁଣି ଥିଲେ ଲୋକେ
ପୁଣି ଥିଲା ମୋ ଦେହରେ ପଉଷର ପଳାତ ମୂର୍ଚ୍ଛନା ।

ପଉଷର କୁହୁଡ଼ିରେ ତାରା ହଜେ ଜହ୍ନ ହଜିଯାଏ
ଝଡ଼ାପତ୍ର ଠେଲି ଧୂଳି ଯାଏ ସମସ୍ତ ବି ଯାଏ
ଜୀବନରୁ ବର୍ଷଟିଏ ଖସିଯାଏ ଆସ୍ତେ ଖସିଯାଏ ।

ନିଦରେ ମୁଁ ଶୋଇଥିଲି କ୍ଳାନ୍ତ ଦେହ କ୍ଳାନ୍ତ ଥିଲା ମନ
ଆଖିରେ ମୋ ସୃପ୍ତି ଥିଲା କମିଜର ରଙ୍ଗରେ ରଙ୍ଗରେ
ଏ ଦେହରେ ସ୍ୱପ୍ନ ଥିଲା, ଥିଲା ମୋର ଜୀବନର ଗାନ ।

ଏତେବେଳେ ଅକସ୍ମାତ ଜହ୍ନ ଯଦି ଉଠେ
ଏତେବେଳେ କୁହୁଡ଼ିରେ ଝରିପଡ଼େ ଥୋପି ଥୋପି ତାରା
ଏତେବେଳେ ହଠାତ ମୁଁ ଜାଣିପାରେ ଯଦି
ଦେହରେ ମୋ ଛୁଇଁଗଲା ଛପି ଛପି ଗୋପନ ଦକ୍ଷିଣା ।

ପଉଷର କୁହୁଡ଼ିରେ ଜହ୍ନ ହଜେ ତାରା ହଜି ଯାଏ
ହସି ହସି ଝରିଯାଏ ସିମେଣ୍ଟର ଚଟାଣ ଉପରେ
ସୁନାର ଝରଣା,
ତା ଆଖିର ତୋଳା ତଳେ ଡେଇଁ ଉଠେ ମୋ ମୁହଁର ଛାଇ ।

ମୁଁ ଗୁହିଁବ ତା' ଆଖିକୁ ଅପଲକ ପୁଣି ଖୁସାସ୍ନାନ
ତା ଓଠରେ ଯେତେ ଫୁଲ ଦଳହୋଇ ରଙ୍ଗ ଗୋଳାଇବ
ମୁଁ ଖୁବଚ ଖୋଜିସିବ ସେଠି ମୋର ପ୍ରାଣର ସନ୍ଧାନ ।

ତା ପାଦରେ ଛନ୍ଦ ଅଛି, ତା ଆଖିରେ ଝିକିମିକି ତାରା
ତା ଦେହରେ ଯେତେ ଢେଉ ଜହ୍ନ ଆଉ ତାରା ଆଲୁଅର
ତା ବେଣୀରେ ନୀଳାସ୍ମିତ ସ୍ୱପ୍ନ ଯେତେ ଉଆଁସ ରାତିର
ତା ଭିତରେ ଆଶା ମୋର ରହେ ଅବା ଗୋପ୍ୟ ନମସ୍କାର ।

ଝରଣାର ବେଣୀ ଝୁଲେ ଝରଣାର ଶାଢ଼ୀ ଢେଉ ଖେଳେ
ପଥରର କୁହୁଡ଼ିରେ ଆଖିରେ ମୋ କ୍ରୋଧ ଯେବେ ନାଚେ
ଝରଣାର କୂଳେ କୂଳେ ଆତ୍ମହତ ମୁଁ ଏକ ପଥିକ
ପାଣି ଖୋଜେ ସ୍ୱପ୍ନ ଖୋଜେ, ଖୋଜେ ମୋର ଦୀପର ଆଲୋକ ।

ସୁନାର ଝରଣା ଯାଏ ଝରି ଝରି ସିମେଣ୍ଟର ଚଟାଣ ଉପରେ
ପଥରର କୁହୁଡ଼ିରେ ଝରେ ଝରେ ଦୁର୍ନିବାର
ଆତ୍ମା ମୋର ପକ୍ଷ ଝଡ଼ିପଡ଼େ
ମୁଁ ତାକୁ ପାଇଛି ଭଲ ବ୍ୟର୍ଥତା ମୋ ପୁଞ୍ଜିଭୂତ କରି
ଜାଣେ ମୋର ଅବଶେଷ ଜାଳି ପୋଡ଼ି ପଥରର ମ୍ଳାନ ଗୋଧୂଳିରେ ।



# ଅଲକା ସାନ୍ୟାଲ

ତୁମକୁ ବା ସଚ୍ଚିବାବୁ ଦେଖିଥିଲେ କେବେ
ଜାଣେନାହିଁ ଅଲକା ସାନ୍ୟାଲ
ସେତେବେଳେ ଆକାଶରେ ସ୍ୱର୍ଣ୍ଣ ଛଟା ବାଘ ଅବା ହରିଣର ଛାଲ
ଅବା ଥିଲ ଗୋଲ ହୋଇ ହଳଦିଆ ଜହ୍ନର ମଶାଲ ।

ମୁଁ ତୁମକୁ ଦେଖେ ଆଜି ତୁମେ ଦିଅ ବ୍ଲାଉଜ୍‌ର ବୋତାମ
ରକ୍ତ ଦାଗ ତୁମେ ଧୁଅ ସେମିଜରୁ ଗରମ ପାଣିରେ
ତୁମେ ପୁଣି କଥା କୁହ ମୁହଁପୋଛା ଟେବୁଲ୍ ସେପାଖେ
ତୁମେ ପୁଣି ଉଠି ଆସି ଆସ୍ତେ ବସ ପାଖ ଚଉକିରେ ।

ଦିପହରର ଧୂଳି ଉଡ଼େ 'ଖାକି ଆଉ ଫିଲ୍‌ଡ଼ ଗ୍ରେ ଧୂଳି'
ସିଗାରେଟ୍ ଧୂଆଁ ପୁଣି ଘରହୋଇ ବସିଯାଏ ଜରିଫୁଲ୍ କାଗଜ ଫୁଲରେ
କାଉ ଆଉ ବାଦୁଡ଼ିର ଚେଁ ଚୁଁ ମିଶିଯାଏ ଏକାଠି ବାହାରେ
କୋଇଲର ଧୂଆଁ ପୁଣି କଣ ମୋଡ଼ି ଉଠେ/ରିକ୍‌ସାବାଲା ବାଟ ଯାଏ ଭୁଲି ।

ତମକୁ ମୁଁ ଦେଖିପାରେ ଯୋତା ଷ୍ଟ୍ରାପ ତୁମେ ଧୀରେ ଖୋଲ
ତୁମେ ଆସି ଲେଟିପଡ଼ ବିଛଣାରେ ବେଣୀ ଆଉ ଶାଢ଼ୀ ଅସଯତ
ତୁମେ ପୁଣି ଆସ୍ତେ ଉଠ ଲୁଗାପଟା ଠିକ୍ ଠାକ୍ କରି
ଟାଉନହଲ୍ ସନ୍ଧ୍ୟାରେ ମୁଁ ପାଏ ପୁଣି ତୁମର ସାକ୍ଷାତ ।

ତମକୁ ବା ସଚ୍ଚିବାବୁ କେବେ ଥରେ ଚିତ୍ରରଥ ଗନ୍ଧର୍ବ ହାତରୁ
ଛଡ଼ାଇ ଆଣିଲାବେଳେ ତୁମେ କଲ ଜୟ ଜୟ କାର
ତା ପରେ ବା ପୁଣି କେବେ ନୁଆଖାଲି ପଠାଣବସ୍ତିରୁ
ଭାରତର ସ୍ୱାଧୀନତା ଦେଲ ପୁଣି ଦ୍ୱିଖଣ୍ଡ ଉପହାର ।

ଦ୍ୱିପହରର କ୍ଳାନ୍ତ ହୁଏ ସନ୍ଧ୍ୟା ଆସେ ରେଳପୋଲ ଆଡୁ
କୋଇଲା ଚୁଲିରୁ ଧୂଆଁ ଦେଖା ଆଉ ଯାଏ ନାହିଁ ଚୁପଚୁପ କାଉ ଓ ବାଦୁଡ଼ି
ସିଗାରେଟ ଧୂଆଁ ହୁଏ ଅନ୍ଧାର ଜମାଟ ପୁଣି/ନରଗିସ୍ ନେତାଙ୍କ ଫଟୋରେ
ଆକାଶରେ ଜହ୍ନ ପୁଣି ଦେଖାଦିଏ/ଅକସ୍ମାତ ଗୋଲ ତାର ତଳ
ଓଠ/ଘାଗରେ କାମୁଡ଼ି

ମୁଁ ତୁମର ଶୁଣେ ଆଜି ଝଡ଼ପର ଭୀଷଣ ବକ୍ତୃତା
ମୁଁ ଦେଖେ ତୁମର ଦେହ/ହଠାତ୍ ଯାଏ କାଦୁଅ ପାଲଟି
ଛିଣ୍ଡା ଚଟି କାଗଜରେ ତୁମର ଯା ଅବଶିଷ୍ଟ ରହେ
ପବନ ସେତକ ନିଏ ସଡ଼କକୁ ସାଉଁଟି ସାଉଁଟି ।

ଭଙ୍ଗା ନୂଆଖାଲିରେ ବା/କଲିକତା ନୂଆଦିଲ୍ଲୀ ଆଡ଼େ
କାଉ ଆଉ ବାଦୁଡ଼ିର ଚେଁ ଚୁଁ, ପୁଣି ଏତେ ଯିବା ଓ ଆସିବା
କଟକରେ ଗଳି ଗଳି ରାସ୍ତା ରାସ୍ତା ଛକରେ ଛକରେ
ରାତିର ପ୍ରସୁତ କଷ୍ଟ ସକାଳର ଭ୍ରୂଣ ଜନ୍ମ ନେବା ।

ତା ଭିତରେ ତୁମେ ପୁଣି ପ୍ରେମ କର ଗର୍ଭବତୀ ହୁଅ
ସିନେମାର ହ୍ୟାଣ୍ଡବିଲ ମୁଁ ଦେଖିଛି ତୁମର ଦେହରେ
ପବନ ତୁମକୁ ଯେବେ ଆସ୍ତେ ନିଏ ବାଲିରୁ ସାଉଁଟି
ମୁଁ ତୁମକୁ ସ୍ୱପ୍ନ ଦେଖେ ମୋର ଢିଲା ପାଇଜାମା କାମିଜର ଅମରାବତୀରେ ।



# ଚିଠି

ତୁମେ ମୋତେ ଭଲପାଅ···ଜାଣେ ଜାଣେ ଖୁବ ଭଲପାଅ
ନିଛାଟିଆ ଜହ୍ନ ତଳେ ପଥରର ବ୍ୟଥିତ ସ୍ୱପ୍ନରେ
ପୁଣି ଜୀର୍ଣ୍ଣ ଚଉଦର ଜରାଗ୍ରସ୍ତ ବିବର୍ଣ୍ଣ ଦେହରେ
ତୁମେ ମୋତେ ଭଲପାଅ ଜାଣେ ଜାଣେ ଖୁବ ଭଲପାଅ ।

ଆଜି ତେଣୁ ଏ ରାତିରେ ନିଶବ୍ଦ ଏ ବାଲି ଉପରେ
ବାଟୋଇ ପକ୍ଷୀର ଗୀତ ଯାଏ ଯେବେ ଚୁପଚାପ ହୋଇ
ଆଉ ଦୂର ଝାଉଁବଣ ଜାକିଜୁକି ସ୍ଥିର ହୁଏ ନିର୍ବାକ ନିଥର
ଅସ୍ତ ଜହ୍ନ ଆଲୁଅରେ ସ୍ୱପ୍ନଯାଏ ଗୁରୁଖାର ହୋଇ
ମୁଁ ତୁମକୁ ଚିଠି ଲେଖେ ମୋର ଏଇ ନିଛାଟିଆ ଘର
ତୁମର ହାତର ଚିହ୍ନ ବିଛଣାରେ ଟେବୁଲରେ, ଟ୍ରଙ୍କ ବାକ୍ସ ସବୁ କଣଅରେ,
ତୁମର ପାଦର ଚିହ୍ନ ପାହାଚ ଉପରେ ପୁଣି ତୃଣଆଡ଼େ ତୃଣପାଖେ
ତୁମର ଦେହର ଚିହ୍ନ ରୋଗଗ୍ରସ୍ତ ଏ ଦେହରେ କ୍ଳାନ୍ତ ମୋର ବିବର୍ଣ୍ଣ ଦେହରେ,

ଏ ରାତିର ସ୍ତୁପ ତଳେ ଏ ଯେ ସ୍ଥିର ଜମାଟ ସ୍ତବ୍ଧତା
ଅସ୍ତତାରା ଆଲୁଅରେ ବାଲିରେ ବା ଦେଖାଯାଏ ପବନର ଇତସ୍ତତ ଦେହ
ଦୂର ଝାଉଁ ଜଙ୍ଗଲରେ ଥଣ୍ଡା ହୋଇ ଆସେ ସ୍ତୁଭ
ସମୁଦ୍ରର ଢେଉରେ ବା ନିରର୍ଥକ ଚେଷ୍ଟା ଆଉ ନଷ୍ଟ ଯେତେ
ଆନୁଷର ବୋଝ

ମୁଁ ତୁମକୁ ଭଲପାଏ···ତୁମେ ଆଜି ଦୂରରେ ଦୂରରେ
ଏଇ ଅସ୍ତ ଜହ୍ନ ଥିବ ତୁମର ଆକାଶ ଆଡ଼େ ହୁଏତ ବା ତୁମର ଆଖିରେ

ତାପର ଆଲୁଅ ଥିବ ସ୍ୱପ୍ନ ହୋଇ ଏ କୁହୁଡ଼ି ଆଉ ଏଇ ରାତିର ଅନ୍ଧାର
ତୁମେ ବା ଉଠିବ ଚେଇଁ ହଠାତ୍ ଦୁଃସ୍ୱପ୍ନ ଦେଖି ଅକସ୍ମାତ କେଉଁ
ଆଶଙ୍କାରେ ।

ମୁଁ ତୁମକୁ ଚିଠି ଲେଖେ ତୁମେ ଦେବ ଚିଠିର ଉତ୍ତର
ତୁମେବା ଆସିବ ଫେରି ଅନ୍ୟଜନ୍ମ ନହେବା ଆଗରୁ
ଏଠି ମୋର ସ୍ମୃତିପାଖେ ଏ ଦେହର ଦୁର୍ଗନ୍ଧ ଓ ଦୁଃସ୍ୱପ୍ନରେ ଆଜି
ମୁଁ ତୁମକୁ ଦେଖିପାରେ ମୋର ଶତ ପ୍ରେତାତ୍ମା ଭିତରେ ।

ତୁମେ ଆସ ଆଜି ଆସ ତୁମେ ମତେ କ୍ଷଣ ଭଲପାଅ
ତୁମର ସ୍ମୃତିର ତଳେ ଅନ୍ତରର ଅକଥିତ ଯେତେ ସବୁ ସ୍ୱପ୍ନ ସେପାଖରୁ
ଯେତେ ଆସି ଫେରିଗଲେ ଶରତର ବାଟୋଇ ବଉଦ
ତୁମେ ମତେ ଚହ୍ନିପାର ଗୀତ ଆଉ କବିତା ଭିତରୁ ।

ମୁଁ ତୁମର ସ୍ୱପ୍ନ ଜାଣେ, ମୁଁ ତୁମର ରାତିର କବିତା
ମୁଁ ତୁମର ଜହ୍ନ ପୁଣି, କାଳିଦାସ ଅନୁବାଦ ପରି
ମୁଁ ତୁମର ବାପ ଛାଇ ସାନ ସାନ ପ୍ରେମିକରୁ ବଳି
ମୁଁ ତୁମର ସତୀତ୍ୱର ଧ୍ରୁବତାର ସ୍ୱାମୀ ଓ ପ୍ରହରୀ ।

ତୁମେ ତେବେ ଆଜି ଆସ ମୁଁ ତୁମର କ୍ଳାନ୍ତ ଅପେକ୍ଷାରେ
ଶ୍ଲେଷ୍ମ ମୋର ଏ କୋଠରି ପୃଥିବୀର ଘୂର୍ଣ୍ଣିବର୍ତ୍ତି ତୁଲେ
ଆକାଶର ଅପନ୍ତରି ଡେଇଁ ଡେଇଁ ଆଜି ଯେବେ ଛୁଟେ
ଏ ଦୁରନ୍ତ ଗତି ବେଗ ବ୍ୟାଧିଗ୍ରସ୍ତ ମୋ ଦେହର ଜରାଗ୍ରସ୍ତ
ମୋର କ୍ଷେମ ମୂଳେ ।

ତୁମେ ଆସ ଆଜି ଆସ ଦଣବଦ ଯଡବା ନୂପୁର
ବାଟୋଇ ପକ୍ଷୀର ଗୀତ ମରୁ ଅବା ଗଳଣି ଯଦତ
ଆକାଶରେ ଜହ୍ନ ଯଦ ଅସ୍ତ ପୁଣି ମ୍ଳାନ ଯେତେ ତାରା
ରମ୍ୟାବତୀ ଗଳ୍ପ ଯଦ ମିଛକଥା ଖାଲି ଝାଳେକଥା ।

॥ କବିତା ସମସ୍ତ-୨୧ ॥

ଏ ଦେହ ଉପରେ ମୋର ଖସ୍ତ ହୋଇଯାଏ ଘାତ
ସମସ୍ତର ପାଦଶବ୍ଦ ତୁମେ ସେଠି ଶୁଣି ପାରୁଥିବ
ତୁମର ପାଟଖି ପରେ ମିଠିରଖି ଏ ଅଣ୍ଡା କୁହୁଡ଼ି
ନଗ୍ନଟିଅ: ସେତେବେଳେ ଆତ୍ମରେ ଶୋଇ ପଡ଼ିଥିବ ।

ଏ ରାତର ପବନରେ ଘୂର୍ଣ୍ଣାବର୍ତ୍ତ ଭିତରୁ ମୋ ତୁମର ସେ ଆକାଶ ଆଡ଼କୁ
ମୁଁ ଆଜି ପଠାଏ ମୋର ଏ ବିରହ ଭସ୍ମ ପୁଣି ଧୂପ ଧୂପ ନିରର୍ଥକ ବାଲି
ମୁଁ ପଠାଏ ତୁମ ପାଇଁ ମୋର ରୋଗ ଯନ୍ତ୍ରଣା ଓ ମୋ ଦେହର
ଝାଳ ଆଉ ତାତର ଖବର
ମୁଁ ପଠାଏ ତୁମ ଆଡ଼େ ମୋର ଶତ ପ୍ରେତାତ୍ମାର ନଷ୍ଟ ଯେତେ ଆଶା ଆଉ
ମୋର ପିତୃପୁରୁଷର ଜରା ମୃତ୍ୟୁ ବ୍ୟାଧିର ଖବର ।

ମୁଁ ତୁମକୁ ଭଲପାଏ ତୁମେ ମତେ ଜାଣେ ଭଲପାଅ
ମୁଁ ତୁମର ଅପେକ୍ଷାରେ ପୁଞ୍ଜୀଭୂତ କରେ ମୋର ଏ ଦେହର
ଯେତେ କାତରତା
ମୋ ଚିଠିର ଉତ୍ତର ବା ତୁମେ ଦେବ ହୁଏତ ନଦେବ
ହୁଏତ ଲେଖିବ ତୁମେ ମୋ ପାଇଁ ବା ବିରହ କବିତା ।

ମୁଁ ଆଜି ତୁମର ବାଟ ଚାହିଁବସେ ଏ ରାତର ଆକାଶରେ
ଅସ୍ତ ହୁଏ ତାରା
ମୁଁ ତୁମକୁ ଖୋଜେ ଆଜି କୁଢ଼ କୁଢ଼ ବାଲି ଆଉ ଏ ଘରର
ଆସବାବ ଜିନିଷ ଭିତରେ
ବାଟୋଇ ପକ୍ଷୀର ଗୀତ ମରି ଅବା ଗଳିଣି ଯଦଚ
ମୁଁ ତୁମର ଅପେକ୍ଷାରେ ମୁଁ ତୁମର ଭ୍ରାନ୍ତ ଅପେକ୍ଷାରେ ।

ତୁମେ ଆଜି ଫେରିଆସ ମୋ' ଦେହର ରୋଗ ଭିତରକୁ
ପିତୃଲୋକ ଆଜି ମୋର ଚାହିଁଥିବେ ଦୂର ଆକାଶରୁ
ତୁମେ ବା ଆସିବ ଫେରି ଏ ବାଲି ଅପନ୍ତରା ଡେଇଁ
ଘାତ ମୋର ଛିନ୍ନ ହେବ ଦୁରନ୍ତ ଓ ଦୁର୍ବିସହ ଏ ଘୂର୍ଣ୍ଣାବର୍ତ୍ତରୁ ।

●●



# ଆଖିର କପୋତ ମୋର

ଆଖିର କପୋତ ମୋର ଆକାଶର ଇସ୍ପାତ ଦେହରେ
ବାଧାପାଇ ପ୍ରତାଡ଼ନ ଫେରିଆସେ ଏହି ପୃଥିବୀକୁ
ଯେଉଁଠାରେ ତୁମେ କର ପ୍ରତାଡ଼ନ ବଜନ ପ୍ରତୀକ୍ଷା
ଜରା ମୃତ୍ୟୁ ବ୍ୟାଧି ପୁଣି ଜୀବନର ଅର୍ଥ ବୁଝିବାକୁ ।
ସମୁଦ୍ରର ଢେଉ ସବୁ ଶ୍ରେଷ୍ଠ ଶ୍ରେଷ୍ଠ ହାତ ପାପୁଲିରେ
ସ୍ଥବିର ବାଲିର ଦେହ ଯେବେ ଦିଏ ଆଉଁଷି ଆଉଁଷି
ମୁଁ ଯାଇ ବିବ୍ରତ ହୋଇ ଭେଦ ଖରା ଦିପହରର ତପ୍ତ ଧୂସରତା
ମୋର ପିତୃ ପୁରୁଷର ସ୍ମୃତି ଖୋଜ ତୁମର ଏ ବିବର୍ଣ୍ଣ ଦେହରେ—
ତୁମେ କୁହ କଥା କୁହ ଘାସ ଆଉ ପତରର ଗୋପନୀୟ କଥା!
ଘାଟିବଣ ଜଙ୍ଗଲର କଥା ଯେତେ ଶିଉଳି ଶାମୁକା ଆଉ ସମୁଦ୍ରର କଥା ।

ବିପର୍ଣ୍ଣ ରାତିରେ ଛିନ୍ନ ବଉଦରେ ବିବର୍ଣ୍ଣ ଜହ୍ନର
ଏ ପାରରୁ ଖସିଯାଇ ସେପାରରେ ମରିଯିବା କଥା—
ଚଇତର ଜୀର୍ଣ୍ଣ ଦେହ ଏ ବାଲିର ଶ୍ରେଷ୍ଠ ଶ୍ରେଷ୍ଠ ଉଆଁସ ଭିତରେ
ଏପାଖ ସେପାଖ ଯାଏ ଉଡ଼ି ଉଡ଼ି ତୁମେ ନଅ ସାଉଁଟି ସାଉଁଟି
ତୁମେ ପୁଣି ଭଲପାଅ ତୁମେ ପୁଣି ହାତଧରି ଡାକ
ତୁମର ଆତ୍ମା ବା କାହିଁ ?   ମୋ ଦେହ ବା ଜୀବନ୍ତ କେଉଁଠି ।
ମେଘର ଇସ୍ପାତ ଦେହ ସ୍ଥିର ପୁଣି ବାଧାପାଏ ସେଠି ତୁମ ମନର କପୋତ ।
ଆଖିର କପୋତ ମୋର ଫେରିଆସେ ଯେତେବେଳେ
                    ଆକାଶର ଭ୍ରାନ୍ତି ପାରି ହୋଇ
ତୁମର ଦେହରେ ଏହି କ୍ଳାନ୍ତି ଆଉ ଶୋକଶୋଷ ଉତ୍ତେଜନା
                    ଖେଦ ଆଉ କୋହର ଭିତରେ
ମୋ ଦେହର ସ୍ୱପ୍ନ ଧରି ବୋହିଯାଏ ସମୟର ନଈ ।

ନିସ୍ତବ୍ଧ ଦ୍ୱିପହରରେ ପହଁଚୁଡ଼ା ଶୁଭେନାହିଁ ଖଗର ନିଶ୍ୱାସ,
ଝାଉଁବଣ ମିଶିଯାଏ ଧୂଆଁ ହୋଇ ଆକାଶ ଭିତରେ
ମନେ ମୋର ପଡ଼େ ନାହିଁ କେବେ ମୋର ଆଖିର କପୋତୀ
ତୁମର ସନ୍ଧାନ ଦିନେ ପାଇଥିଲା କଟକ ବା ଉକ୍ଳସ୍ମିନୀ ସହର ପ୍ରାନ୍ତରେ ।

# ନିହତ ଗୋଧୂଳି

ଏଇ ଦୂର ଆକାଶର ଧୂସର ଦେହରେ
ଶୀତର ପାଉଁଶ ଗୋଳି ଆସେ ଏ ପଉଷ, କୁହୁଡ଼ି ଓ କାକରର ସ୍ୱାଦ,
ଏ ବର୍ଷର ନଷ୍ଟ ଆତ୍ମା ଏ ବାଲିର ଅପନ୍ତରା ପରେ
ଭୁଲିଯାଏ ବାଟ ଅବା ଭୁଲିଯାଏ ପୃଥିବୀର ସ୍ମୃତି ।
ତୁମେ ଆଜି ପାରି ହୋଇ ଅନ୍ୟ କେଉଁ ପଉଷର ଅସ୍ତଗାମୀ ତାରା ଓ ଅନ୍ଧାର
ସମୁଦ୍ରର ମରୁଭୂମି ଆକାଶର ନିସଙ୍ଗତା,
ଶ୍ରାବସ୍ତୀ ବା ଉଜ୍ଜୟିନୀ ତାମ୍ରଲିପ୍ତ ଦିନାନ୍ତ ଭିତରୁ
ଆମର ଏ ପୃଥିବୀର ଦିନାନ୍ତକୁ ଆସିଛ ବା ଏକା ।
ସ୍ତିମିତ ନିସ୍ତେଜ ସ୍ଥିର ଅସ୍ତଗାମୀ ତାରା,
ସ୍ତିମିତ ନିସ୍ତେଜ ତଳେ କୁହୁଡ଼ି ଓ ଝାଉଁର ଜଙ୍ଗଲ,
ଅବସନ୍ନ ସହରର ଏ ନିଶ୍ଚଳ ସ୍ଥବିର ଦେହରେ
ଏ ବର୍ଷର ନଷ୍ଟ ଆତ୍ମା ତୁମର ବା ପାର୍ଥିବ ଦେଖା ।
ସ୍ତିମିତ ତାରାର ଲୁହ ଆକାଶକୁ ପୁଣି ଆକାଶକୁ
ଶୀତର କୁହୁଡ଼ି ଯାଏ ପାରି ହୋଇ ଆଜି ଯେବେ ଦିଗନ୍ତରୁ କେତେ
ଦିଗନ୍ତକୁ ।

ଆମର ଏ ପୃଥିବୀର ନଷ୍ଟ ଦେହ ନିହତ ଗୋଧୂଳି
ତୁମର ଦେହର ରଙ୍ଗ ଧରିରଖେ ଜୀର୍ଣ୍ଣ ପତ୍ର ଶାଖାପରେ
ଆମେ ସବୁ ସେଥିପାଇଁ ସନ୍ଧ୍ୟାବେଳେ ସମୁଦ୍ର କୂଳରେ
ଏକଜୁଟ ହେଉ ଆସି ନିଜ ନିଜ ସତ୍ତାର ବିହ୍ୱଳେ ।
ଏ ବର୍ଷର ନଷ୍ଟ ଆତ୍ମା ନିଗୁଛିଆ କେତେବେଳେ ଅନ୍ଧାର ଭିତରୁ
ହଠାତ୍ ଆସି ଛିଡ଼ାହୁଏ ସାମ୍ନାରେ ସୁଏଟର ସାଲ ଘୋଡ଼ି ହୋଇ
କେତେବେଳେ ନିଗୁଛିଆ ଲାଇଟ୍‌ପୋଷ୍ଟ ପୋକ ଆଉ କୁହୁଡ଼ି ଭିତରୁ
ସେ ରହେ ବା ଗତିହତ ପଥଭ୍ରାନ୍ତ ନିର୍ବାକ ଅନାଇଁ ।

ବାଟୋଇ ପକ୍ଷୀର ଗୀତ ଆଜ ଯଦ ମୌନ ହେଲା ସରଗଲା ଗ୍ରାମଫୋନଗୀତ
ସେକେଣ୍ଡ ସୋ' ଶେଷ ହେଲା ଶେଷ ହେଲା ପାଚାସ୍ଥିତ କଲରୋଳ
ସଙ୍ଗ ଓ ବନ୍ଧୁତା

ପଛପଟୁ ଝଙ୍କରିଲା ଜଗୁଳିଆ ସଡ଼କ ଉପରେ
ଭାନ୍ତ ଯଦ ନଇ ଗଲା ଆକାଶର ଜନ୍ମର ସ୍ଖଳିତ
ଏବର୍ଷର ଭ୍ରାନ୍ତ ଯେବେ ପୃଷ୍ଠୀଭୂତ ଅପମାନ ; ସ୍ଥାଣର ବେଦନା
ଆଉ ନଷ୍ଟ ଦେହ ମନର ଜଞ୍ଜାଳ

ବନ୍ଧୁହୀନ, ପିତୃହୀନ ହତାଶ ପ୍ରେମ ବା' ତାର ସ୍ଫୁକଣ୍ଠର ଆଶା
ପୁଣି କାନ୍‌ସର ଟିବର ହତାଶା,

ଭ୍ରାନ୍ତ ହୋଇ ସବୁ ଯଦ ଜଣେନ୍‌ଦେ ପଢ଼ନ୍ତ ଶୋଇ ମଠ ଓ ହୋଟେଲ୍
ସବୁ ଶୂନଶାନ ସ୍ଥିର ଓ ଜଞ୍ଜଳ

ମୁଁ ଆଜ ତଥାପି ଖୋଲେ ତୁମର ଠିକଣା ଖୋଜ ଜଗୁଳିଆ ବାଟଘାଟ
ବାଡ଼ି ଆଉ ଝାଁଟିର ଜଙ୍ଗଲ ।

ଏବର୍ଷର ନଷ୍ଟ ଆତ୍ମା ଦେହ ଏ ସହରର, ତୁମେ ଯଦ ତା ଭିତରେ ଅଛ ।
ସହରର ହଜାଣ ହେବ ନଷ୍ଟ ହେବ ଦେହମୋର ନଷ୍ଟ ହେବ
ପୃଥ୍ବୀର ମର୍ମାନ୍ତକ ଆଶା

ହଜାଣ କାମନା ହେବ ଲୋପ ହେବ ପୃଥ୍ବୀର ବର୍ଷା ଆଉ ମେଘର ପିପାସା
ଶାନ୍ତ ହେବ ସବୁ ଚେଷ୍ଟା ବଜାର ପ୍ରସ୍ତାବ ଯେବେ, ମୌନ ହେବ
ମଣିଷର ଭାଷା ।

ଧୂସର ସବର୍ଣ୍ଣ ଧ୍ୱସ୍ତ କେଉଁ ଏକ ଗୋଧୂଳିର ଅପସ୍ମାର ପରେ
ମୁଁ ଯଦ ତୁମର ହେବେ ତା ପରେ ବା ପାଏ ପୁଣି ଆଉଥରେ ଦେଖା
ସ୍ୱାମୀ ଆଉ ଜନନୀର ପ୍ରଶ୍ନ ପୁଣି ଜଡ଼ ଜଗତର
ସବୁ ଲୋପ ପାଇଥିବ ଦେହ ମନ ସମସ୍ତ ଓ ପ୍ରେମପଠି ଲେଖା ।
ଦୂରର ଦଗନ୍ତ ମୋର ଜଣାପଡ଼େ ଏ ଛାତରେ···ଜଣାନାହିଁ ତାସ୍
ତାସ୍ ଆସି ଜମାହୁଏ ଫ୍ଲାସ୍କସ୍ଟୋଭ ସ୍ୱଣପାଖେ···ଜଣାପଡ଼େ ଆଶା
ଜନ୍ମ ଆଉ ମୃତ୍ୟୁର ସ୍ଥବିରତା ମାଡ଼ିବସେ ମୂର୍ଚ୍ଛାହତ ସହରର ଛାତ
ଏ ବର୍ଷର ନଷ୍ଟ ଆତ୍ମା ଖୋଜ ଅବା ପାଏ ନାହିଁ ନିଃସହାୟ
ମଣିଷର ମର୍ମାନ୍ତକ ଭାଷା ।

॥ କବିତା ସମସ୍ତ-୨୬ ॥

ମୁଁ ତୁମକୁ ଭଲପାଏ ଆଜିର ଏ ପଚ୍ଛଷ ଗୃଢରେ
ତୁମର ଦେହର ଚାଠ ନଖ ଆଉ ଦାନ୍ତ ଧାଡ଼ି ଧାଡ଼ି
ମୁଁ ତୁମକୁ ଖୋଜେ ଆଜି ଏ ମାଟିର ମମଦାହ୍ମ ଦେଇ
ଆଜି ଯେବେ ପୃଥିବୀର ନଷ୍ଟ ଦେହ ନହ୍ମତ ଗୋଧୂଳି ।



# ହରେକୃଷ୍ଣ ଦାସ (ଏକ)

ଆକାଶର ଅନ୍ଧାରରେ ଏ ପୃଥିବୀ ବୋଗିବର ସ୍ଥଳେ
ଭାରସାମ୍ୟ ଠିକ୍ ଗ୍ରହତାରା ଜ୍ୟୋତିଷ ସହିତ
ଭାରସାମ୍ୟ ଠିକ୍ ରଖେ କଟକରେ ହରେକୃଷ୍ଣ ଦାସ…
ଯୌନ ଆଉ ପ୍ରଜନନଲିପ୍ସା ସ୍ଥଳେ ଠିକ୍ ନିୟମିତ

ଆମର ଏ ପୃଥିବୀରେ କେବେ କିଛି ଲୋପ ହୁଏ ନାହିଁ
ମଶା, ମାଛି, ପୋକ ଯୋକ ଜେକବାକ କାଉ ଓ ବାଦୁଡ଼ି
ରାତର ଅନିଦ୍ରା ଆଉ ଦପହରର ଝାଳ ଆଉ ତାତି
କେବେ କିଛି ଯାଏନାହିଁ ପୁରାପୂରି ଦେଶରୁ ଉଜୁଡ଼ି ।

ରାଜନୀତି ଭଲଲାଗେ ଭଲଲାଗେ ନାଟକ କବିତା
ହରେକୃଷ୍ଣ ଦାସ ପଢ଼େ ପ୍ରତିଦିନ ଖବର କାଗଜ
ସିନେମାରେ ଛବି ପୁଣି ନିୟମିତ ସ୍ଲାଇଡୁ ବଦଳା
ନିୟମିତ ଛୁଟିହୁଏ କଲଟେଷ୍ଟ ସ୍କୁଲ୍ କଲେଜ ।

ନିୟମ ଓ ହାର୍ମୋନି ଭାରସାମ୍ୟ ଠିକ୍ ଅଛି ସବୁ
ଅବାକ୍ ଆଶ୍ଚର୍ଯ୍ୟ ହୁଏ ହରେକୃଷ୍ଣ ଦାସ ଥରେ ଥରେ
ଚତୁର୍ଦ୍ଦିଗ ବଜାରର ବିକାକିଣା ଠେଲା ଠେଲି ଦେଖି
ତାହାର ଏକତା ଏଠି ବ୍ୟବସାୟ ବାରବାର କରେ !

ମେଘ ଓ ତାରାର ଯେତେ ଯାତାୟାତ ରେଳ ମଟରର
ମଶା ଓ ମାଛିର ଯେତେ ଯାତାୟାତ ଦିନ ଓ ରାତିର

ହାଫ୍‌ଛୁଟି ଶନିବାର ମାଟିନ ସୋ ରବିବାର ଦିନ
ଏସବୁ ନିୟମ ତଳେ କାମକରେ ଘୁମ୍ ରୁମ୍ ମିଷ୍ଟିକ୍ କାର ପ୍ରୟୋଜନ ।

× × ×

ଏ ପୃଥିବୀ ଠିକ୍ ସ୍ଥଳେ ଠିକ୍ ସ୍ଥଳେ ସମସ୍ତର ଗନ୍ତ
ଆଜିର ନାୟିକା ପାଏ ମାଆ ପାର୍ଟ୍ କାଲି ସିନେମାରେ
ଆକାଶର ତାରା ଯେତେ କେବେହେଲେ ଗଣିହୁଏ ନାହିଁ
ଆଶ୍ଚର୍ଯ୍ୟ ପୃଥିବୀ ହୁଏ ନିତିବାକ୍ ଅଭିଭୂତ ସୂର୍ଯ୍ୟାସ୍ତ ଭିତରେ ।

ସୂର୍ଯ୍ୟାସ୍ତର ଆକାଶରେ ନିୟନ ଓ କାଠଯୋଡ଼ୀ ନିଭେ
ଗୋଟି ଗୋଟି ଜଳିଉଠେ ତାରା ଆଉ ଦୋକାନ ଆଲୁଅ
ମାର୍କସ୍‌ବାଦ ଗାନ୍ଧିବାଦ ପାମ୍ଫଲେଟ ଟିକଟ ଝକାରେ
ଉତ୍ତେଜନା ଦେଶ୍ ଜମେ ନାଗ୍ରି ଆଉ ଶ୍ରମିକ ବିଦ୍ରୋହ ।

ହରେକୃଷ୍ଣ ଦାସ ବସେ ସ୍ୱପ୍ନ ଦେଖି ଝରକା ପାଖରେ
ସେପାଖ କୋଠାର ଝିଅ ପ୍ରତିଦିନ ବୁଲିବାକୁ ଯାଏ
ପ୍ରତିଦିନ ଏ ପୃଥିବୀ ଆକାଶର ଅପନ୍ୟାସ ଡେଉଁ ?
ଅଜ୍ଞାତ ବା ଅବଜ୍ଞାତ କେଉଁ ଦୂର ଅନ୍ଧାରକୁ ଧାଏଁ ?



## ହରେକୃଷ୍ଣ ଦାସ (ଦୁଇ)

ସନ୍ଧ୍ୟା କେବେ ଜଣାଯାଏ ଗାଢ଼ଲାଲ ବଣନିଆଁ ପରି
ଆକାଶର କଳା ଧଳା ବଉଦର ପାହାଡ଼ ଉପରେ
ସନ୍ଧ୍ୟା ପୁଣି କେବେ ନଭେ କୁଚି କୁଚି, କଳା କଳା ବଉଦ ଭିତରେ
କୋଇଲା ଚୁଲିର ଶେଷ ଟିକି ମିକି ରଙ୍ଗ ନିଆଁ ପରି ।

ଅରଖ ଫୁଲର ଫିକା ବାଇଗଣି ବଉଦ ଉପରେ
ସୂର୍ଯ୍ୟ କେବେ ରହିଯାଏ ମୁହୂର୍ତ୍ତିକ ହଳଦିଆ ପ୍ରଜାପତି ପରି
ଆକାଶର ଫିକାନେଳି ହଳଦୀ ଓ ବାଇଗଣି ମୁଠା ମୁଠା ବଉଦ ଭିତରେ
ସୂର୍ଯ୍ୟ ପୁଣି କେବେ ନଭେ ଧୀରେ ଧୀରେ ଷ୍ଲେଟ ହୋଇ
ବ୍ୟାଟେରୀ ନଥିବା ସାନ ଟର୍ଚ୍ଚ ଲାଇଟ ପରି ।

ସବୁଜ କବିତା ପରି ହୁଏତ ବା ପୃଥିବୀ ରୋମାଣ୍ଟିକ ସ୍ୱପ୍ନାଭ ସୁନ୍ଦର
ରେଡ଼ିଓର ଗୀତପରି ହୁଏତ ବା ଏ ଜୀବନ ଦେହହୀନ କେତୋଟି ମୂର୍ଚ୍ଛନା
'ଧୂପ'ର ବିରହ ପରି ହୁଏତ ବା ଏହିମନ ଆକାଶର ସ୍ୱାଗତର ମେଘ
ହୁଏତ ବା ଏହି ଦେହ ପମ୍ପାସର ନୀଳନୀରେ ନାଗଲୋକ କନ୍ୟାର କାମନା

ତଥାପି ଶୀତର ଥଣ୍ଡା ରାତି ଆଉ କୁହୁଡ଼ିର ଧୂଆଁଳିଆ ଦେହ
ଗଳିରୁ ଗଳିକୁ ବୁଲି ବୁଲି ଲାଇଟ୍ ପୋଷ୍ଟ ବଗୁଲିଆ ସ୍କୁଲ ପିଲାପରି
ଚଉଧୁରୀ ବଜାରର ଆଳୁଅ ଓ ଠେଲାଠେଲି ଗହଳି ଭିତରେ
ଏ ପୃଥିବୀ ଜଣାଯାଏ ବନ୍ଧୁହୀନ ଜ୍ଞାତିହୀନ କେଉଁ ଏକ ଅନ୍ୟ ଦେଶ ପରି ।

ଆଶା ଓ ନିରାଶା ଯେତେ ପ୍ରଚ୍ଛଦର ଓ ସଭାପରେ ଯୋଜନା ଓ କମିଶନ୍ ପରେ ।
ଆଶା ଓ ନିରାଶା ଯେତେ ପ୍ରେମଚିଠି ଲେଖାପରେ ଗୃହକର୍ମ ଓ
ବାହାଘର ପରେ

ଚଉଧୁରୀ ବଜାରର ଆତ୍ମାଦେଇ ଏତେ ଦେହ ନିରାଶା ଓ ଆଶାର ମଣିଷ
ମିଶିଯାଏ ଢେଉ ହୋଇ ଦୋକାନରୁ ଦୋକାନକୁ
ନାଲି ନେଳି ଆଲମାରି କାଚ ଆଉ ଆଲୁଅ ଭିତରେ ।

ହରେକୃଷ୍ଣ ଦାସ ଭାବେ ଅବାକ ଆଶ୍ଚର୍ଯ୍ୟ ଆଜି
ଏତେ ଭିଡ଼ ଏତେ ଲୋକ ଏତେ ତେଜ ଦୋକାନ ଆଲୁଅ
ପେଟ୍ରୋଲ ବାସ୍ନାରେ ସରକାରୀ କାର୍ ଗାଡ଼ି "ଷ୍ଟିଅରିଂ ହୁଇଲ"ରେ
ଏହି ଛୁଆଁ ପ୍ରଥମ ଶୀତର
ହରେକୃଷ୍ଣ ଦାସ ଭାବେ ସହରର ବନ୍ଧୁସ୍ଥାନ ଜ୍ଞାତସ୍ଥାନ
"ନମସ୍କାର" "ଜୟହିନ୍ଦ୍" "ସଲାମ" ଭିତରେ
ହରେକୃଷ୍ଣ ଦାସ ଦିଏ ହଠାତ୍ ଗାଡ଼ିର ବ୍ରେକ—
ଅକସ୍ମାତ୍ ଏକ ଭୟ—
କେଉଁ ଘୋର ଦୁର୍ଦ୍ଦିନ ବା କେଉଁ ଘୋର ମହା ପାତକର ॥

ଭୟ ଆଉ ପାପ ମିଶି ଏ ସମସ୍ତ ଅନ୍ତଃସତ୍ତ୍ୱା···ଜୀବନର ଭଗ୍ନାଂଶ କେବଳ
ତେଣୁ ଏହି ସହରର ଗଳିରେ ଛିନ୍ନ ପ୍ରାଣହୀନ ଦେହ ଓ କାମନା
ତେଣୁ ଏହି ସହରର ବିବର୍ଣ୍ଣ ଦେହରେ ଶୀତ ଖଦଡ଼ ଓ ଉଲ୍‌ର ପୋଷାକ
ଭିତରେ ହଠାତ୍ ଆସି ଛିଡ଼ାହୁଏ ସାମ୍ନାରେ
ଅଭିଶପ୍ତ ମଣିଷର ପାପ ଆଉ ଭୟର ପ୍ରେତାତ୍ମା

× × ×

ଅପରାହ୍ନକାଳର ଗାଢ଼ ବାଇଗଣୀ ବଉଦ ଉପରେ
ସୂର୍ଯ୍ୟ କେବେ ରହିଯାଏ ମୁହୂର୍ତ୍ତିକ ହଳଦିଆ ପ୍ରଜାପତି ପରି
ମଣିଷର କେତେ ସ୍ୱପ୍ନ ଆଶା ଓ ନିରାଶା କେତେ ଯୋଜନା ଓ କମିଟି
ଭିତରେ
ସୂର୍ଯ୍ୟ କେବେ ନିଭିଯାଏ ଆସ୍ତେ ଆସ୍ତେ ଶ୍ଳେଟ ହୋଇ
ବ୍ୟାଟେରୀ ନଥିବା ସାନ ଟର୍ଚ୍ଚ ଲାଇଟ୍ ପରି ।



## ହରେକୃଷ୍ଣ ଦାସ (ତିନ)

ସମସ୍ତ ସହିତ ତାର ସେଦିନର ଅଭିସାର * ମ୍ୟାଜିକ୍ ମୁହୂର୍ତ୍ତ
ପକ୍ଷୀମାନେ ହଠାତ୍ ଉଠିଲେ ଗାଇ : ଆଶ୍ଚର୍ଯ୍ୟ ସେ ରାତି :
ସମସ୍ତ ସହିତ ସେହି ଅଭିସାର ମୁହୂର୍ତ୍ତରେ
କେତେ ପକ୍ଷୀ କେତେ ଫୁଲ୍ କେତେ ବ୍ୟାଣ୍ଡ୍ ବାଜା !!
ଅବାକ୍ ଆଶ୍ଚର୍ଯ୍ୟ ହୋଇ ସେଦିନ ତା କୋଠା ଝରକାରୁ
ହରେକୃଷ୍ଣ ଦାସ ବସି ଦେଖୁଥିଲା
ଫୁଲ୍ ଓ ପକ୍ଷୀର ଭିଡ଼
କେତେ ହସ ନାଚ ଗୀତ କେତେ ସ୍ଲୋଗାନ୍ କେତେ ବ୍ୟାଣ୍ଡ୍ ବାଜା

ରାସ୍ତାଯାକ ଯୋଡାଚଟି କାଚଖଣ୍ଡ ଭଙ୍ଗା ସାଇକଲ୍
ଆସ୍ତେ ଆସ୍ତେ ଜଳୁଥିବା ଜିପ୍‌ଗାଡ଼ି ଓ ଏସ୍ ଟି ସି ବସ୍
ଚିଣ୍ଡା ବହି ଖାତା ବ୍ୟାଗ୍ ରକ୍ତଭିଜା ସାର୍ଟ ଓ ରୁମାଲ
ସନ୍ଧ୍ୟାର ନିଷ୍ଫଳ ଖରା, ପୋଡ଼ିଥିବା ଗାଡ଼ି ଚକ ରବର ଧୂଆଁରେ
ବ୍ୟସ୍ତବ୍ୟସ୍ତ ରାସ୍ତା ପାଖ ଗଛ ।
ପୁଲିସ ଓ ଜନତା ସବୁ ଛତ୍ରଭଙ୍ଗ ହେଲା ପରେ ଶୁନ୍‌ଶାନ୍ ରାସ୍ତା ଓ ପଡ଼ିଆ

---

* A long time age we had made a tryst with Destiny--Jawaharlal Nehru.

ଶୂନ୍‌ଶାନ୍ କୋଠାଘର, ପୁଲିସ୍ ଗଲେଣି ଫେଶ ଆମ୍ବୁଲାନ୍‌ସ୍ ଗାଡ଼ି
ଲାଠି ଗ୍ୟାସ୍ ଗୁଳି ପରେ ଗାଡ଼ି ରିକ୍‌ସା ଚଳାଚଳ ବିଲ୍‌କୁଲ୍ ବନ୍ଦ
ଏ ରାସ୍ତାରେ ।

ସେମାନଙ୍କ ଚେହେରାର ଛାଇପଡ଼େ ଫୁଟ୍‌ପାଥ୍ ରାସ୍ତା ଓ ଛକରେ
ଭିଡ଼ମ୍‌ରୁ ଇଣ୍ଡଷ୍ଟ୍ରିରୁ କେତେ ଜେଲ୍ ଫାଟକ ଭିତରୁ
ସେମାନେ ଆସନ୍ତି ଫେଶ ଧୋବ ଖଦି କୁର୍ତ୍ତାରେ
ଗାନ୍ଧି ଟୋପି ଝୁଲା ବ୍ୟାଗ୍ ଦାଢ଼ି ଧରି
ହଜି ମରି ଯାଇଥିବା ସ୍ଲୋଗାନ୍‌ରୁ , 'ପ୍ରସେସନ୍' 'ଜୁଲୁସ୍' ଭିତରୁ
ଏଇ ଝାପ୍‌ସା କୁହୁଡ଼ିରେ
ବିଧାନ ସଭାର ଏଇ ଭାଙ୍ଗିଥିବା କାଠବାଡ଼ ଶୂନ୍‌ଶାନ୍ କୋଠା ସାମ୍ନାକୁ ।

ସେ ଯାହା ସେ ସ୍ଲୋଗାନ୍‌ରେ ଥିଲା ଏକ ନର୍ମ୍ମକ ନିର୍ଣ୍ଣୟ
ଆଜିର ସ୍ଲୋଗାନ୍ ଆଉ ଚିତ୍କାରର ଉଲଗ୍ନ ଏ ନିଷ୍ଠୁର ଆକ୍ରୋଶ
ଭୟଙ୍କର ଏଇ କ୍ରୋଧ ଏଇ ଘୃଣା
ସମସ୍ତର ଏ ସନ୍ଧିରେ ତାର କେଉଁ ନିର୍ଦ୍ଦିଷ୍ଟ ନିର୍ଣ୍ଣୟ ?

ହରେକୃଷ୍ଣ ଦାସ ଆଜି ଡାକଡାର ବିଲ୍ଡିଂର କୋଠା ଝରକାରୁ
ଆଚ୍ଛନ୍ନ ଆଖିରେ ଦେଖେ କୁହୁଡ଼ିର ପ୍ରଚ୍ଛନ୍ନ ପ୍ରହର
କ୍ରମେ ଆସି ଡାକିଦିଏ ନଭ ନଭ ଆସୁଥିବା ଓ ଏସ୍ ଟି ସି ବସ୍
ସେମାନଙ୍କ ଚେହେରାର ଛାଇ ପରି ଏ ନିଷ୍ଫଳ ଜନ୍ମ ଓ କୁହୁଡ଼ି
ସେମାନଙ୍କ ସ୍ଲୋଗାନ୍‌ର ପ୍ରତିଧ୍ୱନୀ ଶୋଷି ନିଏ
ଆସେମ୍ବ୍ଲିର ନିର୍ଜନ ରାସ୍ତାରେ.........

ଆଶ୍ଚର୍ଯ୍ୟ ସେ ହଜିଥିବା ମୁହୂର୍ତ୍ତିର ସମସ୍ତର ଅଭିସାର ରାତି
ପକ୍ଷୀ ଆଉ ଫୁଲ ସବୁ
ହସଗୀତ ବ୍ୟାଣ୍ଡ୍ ବାଜା
କେବେ ଥିଲା ?   କେଉଁଠି ?   କେଉଁଠି ?



## ହରେକୃଷ୍ଣ ଦାସ  ( ସ୍ମୃତ )

କେତେ ମୃତ୍ୟୁ ଜନ୍ମ କ୍ଷୟ କେତେ ନଷ୍ଟ ଶତାବ୍ଦୀର
ବିଲୁପ୍ତି ଓ ପରିବର୍ତ୍ତନରେ
ଯାଯାବର ତା ସତ୍ତାର ଯାତ୍ରା ବା ଆରମ୍ଭ ହେଲା ?
ଆଜିର ଏ ଶତାବ୍ଦୀର ମ୍ରିୟମାଣ ଅସ୍ତ ଆକାଶରେ
ଯେତେବେଳେ ଉତ୍କଣ୍ଠା ଓ ଆଶଙ୍କାର ପ୍ରଶ୍ନଚିହ୍ନ ଏତେ
ତା ସହିତ ଦେଖା ମୋର ଆଜି ପୁଣି ଅକସ୍ମାତ
ରାଜଧାନୀ ପି. ଆର୍. ସି. ଛକରେ ।

ଆଜି ତାର ଚେହେରାରେ ବିଶେଷ ଯେ ନୂଆ କିଛି
ବିଶେଷ ତଫାତ୍ କିଛି ଜଣା ପଡ଼େ ନାହିଁ
ମୁଣ୍ଡରେ ବାବୁରି ବାଳ ସରୁ ଜଣ ନାକ ତଳେ
ସେହି ଚେଷ୍ଟା ଆତ୍ମ ପ୍ରତିଷ୍ଠାର
ତଫାତ୍ ଏତିକି ଯାହା ଫେସନ୍‌ରେ ପୋଷାକରେ
ହିନ୍ଦି ଆଉ ଇଂରାଜି ମିଶା ମିଶି ଓଡ଼ିଆ କଥାରେ ।
ହରେକୃଷ୍ଣ ଦାସ୍ ଆଜି ପି. ଆର୍. ସି. ଛକରେ ଦେଖେ
ଆକାଶରେ ଅଗଣିତ ତାରା

ଅଗଣିତ ପ୍ରଶ୍ନବାଚୀ ଅସଂଖ୍ୟ ସପ୍ତର୍ଷିପଣ
ଆଜିର ଏ ଶତାବ୍ଦୀର ନଷ୍ଟ ଦେହ ଶେଷ ଦଶକରେ ।

ସେଦିନ ବି ଠିକ୍ ସେଠି ଅନ୍ୟ ଏକ ଶତାବ୍ଦୀର ପ୍ରଶ୍ନଚିହ୍ନ ଧଣ
ରାତ ଯେବେ କ୍ଷୁଧାଗ୍ରସ୍ତ ହତବାକ୍ ଅନ୍ୟ ଏକ ସହରର ନିର୍ଜନ ରାସ୍ତାରେ
ହରେକୃଷ୍ଣ ଦାସ୍ ତାର ପିଲ୍‌କର ପଗଡ଼ି ତଳୁ ଆଶ୍ଚର୍ଯ୍ୟ ଅବାକ
ଶୁଣିଲା ଘୋଡ଼ାର ଶବ୍ଦ
ଘୋଡ଼ାର ଆବାଜ ଗଲା ସହରର ସୀମା ପାର୍ ହୋଇ
ବିପର୍ଯ୍ୟସ୍ତ ଯେବେ ଆଶା କାମନାର ମୃତ୍ୟୁ ଖୋଜ
ମହା ପରିନିର୍ବାଣରେ ବୋଧିଦ୍ରୁମ ଆଡ଼େ ।

ତାପରେ ସେଦିନ ପୁଣି………
ମଝିରେ ଶତାବ୍ଦୀ କେତେ ଲୋପ ପାଇ ଯାଇଥିଲା
ଯାଯାବର ତା ଯାତ୍ରାର ଖବର ନ ଥିଲା କିଛି……
କିନ୍ତୁ ପୁଣି ସେଦିନ ସନ୍ଧ୍ୟାରେ
ଶାଗୁଣା ବହୁତ ଥିଲେ ଆକାଶରେ
ହିମାଳୟ ପାର ହୋଇ ଇତିହାସ ଆସିଥିଲା
ବାରୁଦ ଗୋଲାର ଧୂଆଁ ଉଲ୍ ଟୋପି ଉଲ୍ ପୋଷାକରେ ।
ଦିଲ୍ଲୀର ନିର୍ଜନ କୋଠା ଉହାଡ଼ରେ ଛିଡ଼ା ହୋଇ ହରେକୃଷ୍ଣ ଦାସ
କପାଳରୁ ଝାଳ ପୋଛି ସେଦିନ ସନ୍ଧ୍ୟାରେ
ମନେ ମନେ ଠିକ୍ କଲା ଏଥର ଶିଖିବା ପାଇଁ ଫାର୍ସି ବା ଆରବି ଭାଷା
ସମସ୍ତର ଏହି ନୂଆ ସୁବିଧା ଓ ନୂଆ ସୁଯୋଗରେ ;

× × ×

କେଉଁ ସ୍କୁଲ୍ ମଦ୍ରାସାରୁ ଉର୍ଦ୍ଦୁ ବା ଫାରସି ଶିଖି ହରେକୃଷ୍ଣ ଦାସ୍
ମୋଗଲ୍ କୋର୍ଟରେ ଥିଲା କିରାଣି ବା…ଗଜପତି ଉଆସ ଭିତରେ

ସେଇ ସୁଲ ସ୍ୱପ୍ନାଙ୍କୁ ଜରଣି ଅକ୍ଷର ଛିପି ନେଉଥିଲେ
ଜମାଖର୍ଚ୍ଚ ଖାତାର ହିସାବ
ଜିନ୍ଦଗି ଅମଳ ବେଳେ ଯେବେ ପୁଣି ପାସ୍ କଲା ହାଇସ୍କୁଲ ପାଠ
ହରେକୃଷ୍ଣ ଦାସ ଥିଲେ ସେଇ ଗ୍ରେଟ୍ ଅଫିସର ଖାତା ବାବୁ
ଲଗାଣ ବା ଟିକସ୍ ବାଗେରା……
ତଥାପି ତା ସ୍ୱପ୍ନାଖିରେ ସେଦିନ ବି ଥିଲା ପଚିଶ ବସନ୍ତର ପ୍ରବୁଦ୍ଧ ପ୍ରଫୁଲ୍ଲତା
ପ୍ରବୁଦ୍ଧ ତାର ଦୁଇ ଆଖି ପ୍ରଶ୍ନମୟ ବ୍ୟସ୍ତ ଓ ବିବ୍ରତ
ନୂଆ ନୂଆ ସୋପାନରେ ବାରମ୍ବାର ସେଇ ଚେଷ୍ଟା ଆତ୍ମ ପ୍ରତିଷ୍ଠାର ।।

ଆଦମ ଯୁଗରୁ ତାର ଆଜଯାଏ ଏ ଯାତ୍ରାର ଶେଷ ଅବା କେବେ ?
ଦ୍ୱିଧାଗ୍ରସ୍ତ ତା ମନର ଅସହାୟ ଆଶଙ୍କା ଭିତରେ
ସଭ୍ୟତା ଓ ସାମ୍ରାଜ୍ୟର ଉତ୍ଥାନ ଓ ପତନ ବିବର୍ତ୍ତନ
ଅର୍ଥନ୍ୟାସ ପାଇ ନାହିଁ
ତା କ୍ଷୁଦ୍ର ସତ୍ତାର ଚିର ଦ୍ୱନ୍ଦ୍ୱ ଭୟ ଭକ୍ତି ଓ ଭ୍ରାନ୍ତିରେ
ଟେକ୍ସ୍ଟ ବହି ଛଡ଼ା କେବେ ଇତିହାସ ଅର୍ଥ ପାଇ ନାହିଁ ।

ଦ୍ୱିଧାଗ୍ରସ୍ତ ଯାତ୍ରା ତାର ଚଳନ୍ତନ ଶୁଭ ହେଲ
ଚଳନ୍ତନ ଜାଣ ରହୁ ତା ଅସ୍ଥିର ଅବୋଧ ଚେତନା
ନେତା ମନ୍ତ୍ରୀ ବିଧାୟକ ଖାର୍ଣ୍ଣକ କବି ଶିଳ୍ପୀ ଉଦ୍ୟୋଗ ପ୍ରତିଷ୍ଠା
ଲୋପ ପାଇ ଗଲେ ପରେ, ଅଫିସ୍‌ରେ ଭଟସାରେ
ଡଟ୍‌ପେନ୍ ଫାଇଲ୍‌ରେ ତାର କ୍ଷୁଦ୍ର ସତ୍ତା ରହୁ
ମୃତ୍ୟୁଞ୍ଜୟ ମଣିଷର ସ୍ଥିର ବନ୍ଦୀ ହୋଇ
ହରେକୃଷ୍ଣ ଦାସ
ବାରମ୍ବାର ଫେରୁ ଆଜ ମୃତ୍ୟୁରୁ ଅମୃତ ଖୋଜ
କୋର୍ଟକୁ, ଭଟଣ୍ଟକୁ
ବର୍ତ୍ତମାନ ସମୟର ‘ପତନ ଓ ଅଭ୍ୟୁଦୟ’ ଅର୍ଥନ୍ୟାସ ପାଇଁ

× × ×

ସେକ୍ସନ୍ ଅଫିସର—ଗେଜେଟେଡ୍—କ୍ଲାସ୍‌ଟୁ—ଜୁନିଅର
ହରେକୃଷ୍ଣ ଦାସ
ଆଜି ଯେବେ ଶକ୍‌ସା ଖୋଜେ ରାଜଧାନୀ ପି. ଆର୍. ପି. ଛକରେ
ସମସ୍ତର ଉଦ୍ଧାର ଶୁଭେ ଯେବେ ଟିଭିରେ ଓ ରେଡ଼ିଓରେ
ମଟର ହର୍ଣ୍ଣରେ
ଆହା......ଶକ୍‌ସା ଚଢ଼ୁ ହରେକୃଷ୍ଣ ଦାସ
ଦ୍ୱିଧାଗ୍ରସ୍ତ ତା ଆଖିରେ ଭଗ୍ନଚନ୍ଦ୍ର ସ୍ୱପ୍ନଚନ୍ଦ୍ର
କ୍ଷୟମାନ ଶତାବ୍ଦୀର ଶେଷ ଦଶକରେ!



# ପିକ୍‌ନିକ୍

ଯେଉଁଠି ଜୁଆର ଆସେ ପୋଡଦେଇ ମୁହାଣର ଘାସ ଖଣ୍ଡବଣ
ଯେଉଁଠି ପାଣିରେ ଆସେ ଅକସ୍ମାତ ଫେଣ ଛପି ଓଲଟାଇ ମଗରର ପିଠି
ଯେଉଁଠି ପବନ ଯାଏ ଖୋଜି ଖୋଜି ସାପ ଗାତ ବୁଢ଼ିକଙ୍କ
ଘାସ ତଳେ ତଳେ
ଯେଉଁଠି ଧୂସର ସବୁ ବାଲି ଏ ଚଳର ରଙ୍ଗ କଂକଡ଼ା ଓ କୋଙ୍କଣିଆଳର
ଆଜି ସେଠି ଯାଉଥିବ ଅସ୍ତହୋଇ ସ୍ତବ୍‌ଧ ହୋଇ ଏ ସହରର ଜନ୍ତୁ ।

ଆମେ ସବୁ ବେଳେ ବେଳେ ରୋମାଣ୍ଟିକ ମନନେଇ ଗପସପ କରି
ସାହିତ୍ୟ ଓ ରାଜନୀତି ଛାଡ଼ି ଦେଇ ଚଟାକରୁ ପିବାକୁ ସେଠିକି
ଟିଣ ଦୁଧ, ଚା, ଷ୍ଟୋଭ
ସିଗାରେଟ୍ ଭିଆସିଲ ଯଥେଷ୍ଟ ଯଥେଷ୍ଟ
କ୍ୟାମେରା ଓ ଗ୍ରାମଫୋନ୍, ଆଉ ପୁଣି ଯଦି ହୁଏ ଜଣେ ଜଣେ ଆମର
ପ୍ରେମିକା·········
ଜନ୍ତୁଯାଏ ଧୀରେ ଧୀରେ ଶେଷକୁ ନିସ୍ତେଜ ହୋଇ
ଆମେ ସବୁ ଗୃହିଁ ଦେଖୁ ବାରବାଟି ଗ୍ରାମପାଖେ ନିଗ୍ରୁଟିଆ ଗଡ଼ର ପରିଖା ।

ହାତ ଯଦି ରହିଯାଏ ଚୁପ୍ କେବେ କେବେ ପକେଟ୍‌ରେ
ଟେବୁଲ୍ ଉପରେ
ଆମେ ସବୁ କଥା କହୁ ଚଠି ଲେଖୁ ଟାଇପ୍ କରୁ ଗୀତ ମଧ୍ୟ ଗାଉ
ବେଳେ ବେଳେ ସ୍ୱପ୍ନ ଦେଖୁ—
ମାର୍କସାବାଦ ଗାନ୍ଧିବାଦ ଆଲୋଚନା କରୁ·········
ଜୁଆର ହୁଏତ ଆସେ ପୋଡଦେଇ ମୁହାଣର ଘାସ ଖଣ୍ଡବଣ
ତା ପରେ ହଠାତ୍ ଯାଏ କଥା ସବୁ ଆମର ମୁହଁରୁ ।

ଆମର ସଉଚ ଶୋକ ସକାଳ ଓ ସନ୍ଧ୍ୟାର ପ୍ରାର୍ଥନା
ଆମର ସଉଚ ଜନ୍ମ ସଗ୍ରାମ ଓ ସ୍ୱପ୍ନର ସାଧନା
ଆମର ସଉଚ ମୃତ୍ୟୁ ଦେହ ଆତ୍ମା ପ୍ରାଣର ବେଦନା
ଆମର ସଉଚ ମୁକ୍ତ ଗବଣ ଓ ଗଧାର ବନ୍ଧନ...... ।

କେଉଁଠି ଜୁଆର ଆସେ ପୋଢଦେଇ ମୁହାଣର ଘସ ଖଣବଣ
କେଉଁଠି ଫେଣରେ ନାଚେ ଜୀବନର ଇନ୍ଦ୍ରଧନୁ ମରଣର ଆଦିମ ଆହ୍ୱାନ ?
କେଉଁଠି ପବନ ଯାଏ ବୁଢ଼ବଙ୍କ ଘାସତଳେ ଖୋଜି ଖୋଜି ପ୍ରାଚୀନ
ଏ ପୃଥିବୀର ପ୍ରାଣ ?
କେଉଁଠି ଧୂସର ବାଲି ଧଣରଖେ ସ୍ମୃତ ସବୁ ଅସ୍ତଗାମୀ ଜନ୍ମର ସନ୍ଧାନ ?



# ଛୁଟିର ଖବର

ପାଛୁଡ଼ା ଧାନର ସ୍ଲେପା ଗ୍ରୁଇଯାଏ ଆକାଶ ଆକାଶ ହଳଦିଆ ସୋରିଷ କୁଆସା
ଅଶ୍ୱତ୍ଥ ଗଛର ଖବର, ନଗ୍ଗୁଟିଆ ଖଜୁରି ଗଛର
ପାଛୁଡ଼ା ଧାନର ସ୍ଲେପା ଆକାଶର ଏପାରି ସେପାରି ।
ନରମ ଆକାଶ ଆଉ ନାଲି କହିଁ ଶୁନ୍‌ଶାନ୍‌ ବେଣା ବାଲିଚର
ନଗ୍ଗୁଟିଆ ଜୋର ପାଣି ନଗ୍ଗୁଟିଆ ନେଳି ଶିଉଳିରେ ହଳଦିଆ ଏଇ ଦି ପହର ।

କ୍ଳାନ୍ତି ମୋର ଧୋଇ ଯାଉ ନଗ୍ଗୁଟିଆ ନରମ ଖବରେ
ଡାହୁକ ଡାକର ଖବର, ନାଳି ନାଳି ବରଫଳ କେତକୋଳି ଖଜୁରିକୋଳିର
ଅତଡ଼ାରେ ଖଣା ଖାଲି ଆଉ ଧଳା ବାଲିଚର ଖବର
ଦେହ ମୋ'ର ଧୋଇ ଯାଉ ଘାସ ଆଖିପତା ନରମ ଖବରେ ।

ପାଛୁଡ଼ା ଧାନର ସ୍ଲେପା ଗ୍ରୁଇ ଯାଏ ଆକାଶ ଆକାଶ···
ଗ୍ରୁଇଯାଏ ଆକାଶରେ କାଚ ଆଉ ଚକ୍‌ ଚକ୍‌ ଜରିର କାଗଜ ।
ଦୋକାନର ପାହାଚରେ ଜରି ଆଉ କାଗଜର ଖବର···
ତୁମର ଓ ମୋ ଭିତରେ ଗୃ', କଫି, କାଚ ଗ୍ଲାସ
ସ୍ଲେଟ ସ୍ଲେଟ ଗ୍ମୁଚରେ ଆଶଙ୍କା ଓ ଅବଶୋଷ
ଜୀବନର କ୍ଳାନ୍ତି କେତେ କାରୁଣ୍ୟ ଓ ପ୍ରାଣର ଦରଜ ।

ତୁମର ମନର କ୍ଳାନ୍ତି ଆଜି ଯଦି ଧୋଇଯାଏ ଟେବୁଲର ନରମ ଖବରେ
ହଳଦିଆ ଗୃ', କଫି, ସରବତ ଦୋକାନ ଖବରେ
ଆମର ଏ ବାଟଚଲି, ପୂଜାଛୁଟି, ଖବରଛୁଟି ଗୋଟି ଗୋଟି ରବିବାର
ଅପରାହ୍ନ ଖବର ଆଉ ଦିପହର ଅବସନ୍ନ ଆସକ୍ତି ଭିତରେ

ହୁଏତ ତୁମେ ଓ ମୁଁ ପ୍ରାଚୀନ ଏ ପୃଥିବୀର ଏ ଦିଗନ୍ତ ଉପରେ
ପ୍ରାଚୀନ ଖଇର ବାଟ ଚାଲି ପାଉଁ ଆପଣାର ଦିଗ
ଆପଣାର ବାଟ ପୁଣି ପାଇବୁ ହଠାତ୍ ଫେରି...
ନରମ ଖଇର ମେଘ...
ଧାନର ନରମ ଖଇ...
ଜୀବନର ହଳଦିଆ ଛୋଟ ଛୋଟ ମୁହୂର୍ତ୍ତର ଆକର୍ଷଣ୍ଟକ ନରମ ଦେହରେ ।

ପାଚୁଡ଼ା ଧାନର ଶ୍ଲେପା ଗୁଡ଼ି ଯାଏ ଆକାଶ ଆକାଶ
ଡାହୁକ ଡାକର ଖଇ ନଗ୍ନଛିଆ ବାଲିଚର ଖଇ
ଆଜି ତେଣୁ ଡାକନାଏ ସହରର ରେଲପୋଲ ଡେଇଁ
ତୁମକୁ ଛୁଟିର ଖଇ ଝିଙ୍ଗପଣ ବାଲିଚର ଖଇ ।
ଚୁପ୍ ଚୁପ୍ ବାଲିଚର, ଗାଁ ସ୍କୁଲ, ଡାକ ପିଅନ ସାଇକେଲ ଘଣ୍ଟି
କେଉଁଠି ସାଇର ଚିଙ୍କି ଚୁପ୍‌ଚୁପ୍, ଲୁଗାନାନ୍ଧି ଧୋବାଗୁଠ ଆଡ଼େ
ଗୁରୁବାର ଚିତା ନାହିଁ ମାଣବସା ଫୁଲ ଫୁଲ ସଉରୁଣୀ ଶାଶୁ ବୋହୂ କଳି
ଶୁନ୍ ଶାନ୍ ତୁମ ଗାଆଁ ଆମ ଗାଆଁ
ହଜିଗଲେ ଏ ଶ୍ରୀହୀନ ଖଇରେ ।

ହଳଦିଆ ଦିପହର ବୋରଖାଙ୍କି ଶିଉଳିର ଖଇ
ନଗ୍ନଛିଆ ନଦୀର ଗେଣ୍ଡାଳିଆ, ଘାସ ଆଉ ନରମ ଆକାଶ
ପାଚୁଡ଼ା ଧାନର ଶ୍ଲେପା ଉଡ଼ିଗଲା ଆକାଶ ସେପାରି—
ତୁମର ଓ ମୋର ଏହି ଚା, କଫି ଶୋଷ ଆଉ
ପୂଜା ଛୁଟି, ଖଇ ଛୁଟି
ଅନ୍ତଃସାର ଶୂନ୍ୟ ଏଇ ନଗ୍ନଛିଆ ଖଇ ଓ ଆକାଶ ।



# ଦୃଷ୍ଟିର ଦିଗନ୍ତ

କେତେ କଆ ଶିମ୍ବ କେତେ ଧାନଗଛ ପତର ଉପରେ,
ଥକାହୋଇ ଏହି ଖରା ଫିକାରଙ୍ଗ ଏହି ଦିପହର
ଝିଣ୍ଟିକାର ଫିକା ଦେହ ଘାସ ତଳେ ମିଶାଇ ମିଶାଇ
ନଗ୍ରୁଣ୍ଟିଆ ବିଲ ଘାଟ ଏହି ଖରା ଶୋଇ ପଡ଼ୁଥିବ ।

ହୁଏତ ବା ଏ ସହର ଆରପାଖେ ଗୋଡ଼ିବାଣ ଫୁଲର ରଙ୍ଗରେ
ସମସ୍ତର ଏହି ଭୟ ସୂର୍ଯ୍ୟାସ୍ତର ନିର୍ବଣା ଓ ନିଶାନ୍ତର ଶଙ୍କିତ ଚେତନା
ହୁଏତ ବା ଛପିଯିବ ପ୍ରଶ୍ନ ଓ ସମସ୍ୟା ସବୁ
ଦୁଃଖ ଓ ଦୁସ୍ୱପ୍ନ ଯେତେ
ଗୋଡ଼ିବାଣ ଫୁଲର ରଙ୍ଗରେ ।

ଏ ଖରାର ନିଦ ଠିକ୍ ନଗ୍ରୁଣ୍ଟିଆ ଧାନବିଲ ଆଡ଼େ
କାଠକଟା ଚଢ଼େଇର ଡାକପରି ଅବୁଝ ଉଦାସ
ନଗ୍ରୁଣ୍ଟିଆ କୋର ତଳେ କର୍ଣ୍ଣିନାଡ଼ ଦଳ ଆଉ ଫିକାନେଳି ଶିଉଳି ଭିତରେ
କଉମାଛ ନିଦପରି ଏ ଖରାର ନିଦ ଠିକ୍
ଏ ଗଳିର ଡସ୍‌ଟବିନ୍ କାନ୍ଥ ଓ କବାଟ ପାଖେ
ନଗ୍ରୁଣ୍ଟିଆ ଶିଥିଳ ଉଦାସ ।

ଆଜି ଯେବେ ଏ ଖରାର ସ୍ୱପ୍ନ ଆସେ ମୋ ମନରେ
ଏହି ଶ୍ରେବା ଦକ୍ଷିଣାରେ ଧାନକଟା ମହକ ଓ ନଗ୍ରୁଣ୍ଟିଆ ବିଲ
ନଗ୍ରୁଣ୍ଟିଆ ସ୍ଥଳତଳେ ଧାର ଧାର ପିମ୍ପୁଡ଼ି ଓ କଙ୍କିଡ଼େଣା ଅସରପା ଗୋଡ଼
କେତେ ଅପା, ନୂଆବୋଉ, କେତେ ଖୁଡ଼ୀ ବଡ଼ମାଆ
ହନୁମାନ ମୁଖା ଗାଆଁ ଆଖଡ଼ା ଘରର···
ମୋ ମନରେ ସ୍ୱପ୍ନ ଆସେ ଆଜି ଶ୍ରେବା ଦକ୍ଷିଣାରେ···

ମୋ ମନରେ ଘାରେ ଆଜି ପକ୍ଷାଘାତ ରୋଗପଣ
ଏହି ଝିମ ଦିପହରର ଧୂସର ଓ ନିଷ୍ଠୁର ଧୂସର ।
ଧୂଳି ଓ କାଗଜ ଫୁଙ୍କି ବୁଲି ବୁଲି ଗ୍ଲେଟ ଗ୍ରେଟ ଭଉଁରୀ ଭିତରେ
ଏ ଗ୍ରୀଷ୍ମ ଦକ୍ଷିଣା ଆଜି ଝାଞ୍ଜି ହୁଏ—
ଏହି ତାତି ଆକାଶର ପିଚ୍ ସଡ଼କର···
ଆଜିର ଏ ରବିବାର ଦିପହରର ନିଦ ଠେଲି ପଛରୁ ଏ ସ୍ୱପ୍ନ ଆସେ
ଗୋଡ଼ିବାଣ ଫୁଲର କଣ୍ଠର
ଆଜିର ଏ ସ୍ୱପ୍ନ ଆସେ ପାରି ହୋଇ କେତେ ବିଲ
କେବେ ବାଙ୍କ ବୁଲଣି ଓ ପାରି ହୋଇ କେତେ ରେଲପୋଲ ।
ଡେଇଁ କେତେ ଅପଲ୍ଲବ ଶଗଡ଼ ଗୁଲାର ଧୂଳି ସ୍ମୃତି ଆସେ ସ୍ୱପ୍ନ ହୋଇ
ଦୂରାନ୍ତର, କେତେ ବ୍ୟର୍ଥ ଦୃଷ୍ଟିର ଦିଗନ୍ତ···

ଏ ଦୃଷ୍ଟିର ଦିଗନ୍ତରେ ଚରମ ଏ ପିପାସାର ଚରମ ବ୍ୟର୍ଥତା
ହୁଏତ ନିସ୍ତାର ଖୋଜେ ଦୂର ଗାଆଁ ଜୀବନର ଦାରିଦ୍ର୍ୟ ଅଭାବ ଆଉ
ସମସ୍ତର ନିରର୍ଥକ ସମବେଦନାରେ
ଆଜି ତେଣୁ ମୋ ମନରେ ଗୋଡ଼ିବାଣ ଫୁଲ ଫୁଟେ
ପତ୍ର ଝଡ଼େ ଅଶ୍ୱତ୍ଥର ଝଡ଼ାପତ୍ର ।

ଥୁଣ୍ଟା ଗଛ କୋରଡ଼ ଭିତରେ
ପବନ ଗୁମୁରି ଯାଏ
ସକାଳ ଓ ଦିପହରର ତାତି ଓ ଅନ୍ଧାର ତଳେ
ନିଶବ୍ଦ ମଶାଣିର ଜୁଇଗାଡ଼ ମଶିଣା ଓ ଛିଣ୍ଡାକନା ଖପରି ଉପରେ ।



# ସନେଟ୍

( ଏକ )

ଅସଂଖ୍ୟ ଦେହର ସ୍ୱପ୍ନ ଭାସିବୁଲେ ଏ ରାତିର ସପନ ଭିତରେ
ତାରିରେ ତାରିରେ କ୍ଳାନ୍ତ ସ୍ଫୂର୍ତ୍ତି ଆଉ ଅନ୍ୟମନସ୍କତା
ଆଜି ତେଣୁ ଏ ବାଲିରେ ଅନୁଙ୍ଗର ବିଜନ ଦେହରେ
ପବନ ଥରାଇଯାଏ ନଷ୍ଟ କେତେ ଦେହର କବିତା ।

ଆଖିର ପାଖୁଡ଼ାତଳେ ହୁମହେଲା ରକ୍ତ କେତେ ରାତିର ଶିଶିର
ଫୁଟି କେତେ ଝଡ଼ିଗଲା କ୍ଳାନ୍ତ କେତେ ଓଠ ଉପକୂଳେ
କେତେ ରକ୍ତ ତଳେ ତଳେ ଜଳି ପୋଡ଼ି ନଭିଗଲା ବସନ୍ତର ତାଢ
କେତେ ଜହ୍ନ ମ୍ଳାନ ହେଲା କେତେ ଛିନ୍ନ ଅଳକ ଭିତରେ ।

ବିବର୍ଣ୍ଣ ଦେହର କେତେ ସ୍ୱପ୍ନମରେ ସମସ୍ତର ହାତ
ଆଜିଯାଏ କାଟି କାଟି କେତେ ଦେହ ଓଠର ଫସଲ
କେତେ ମାଂସ ଚମ ଗଲା ଜୁର ହୋଇ ମାଟିରେ ମାଟିରେ
ଏ ବାଲିରେ ମରିଗଲା କେତେ ରୂପ ଦେହର ଜଙ୍ଗଲ ।

ମୁଁ ଯଦି ତୁମକୁ ପାଏ ପାରିହୋଇ ଆଉ ଦେହ
ପାରି ହୋଇ ଥାନ୍ତି ଯେତେ ସମସ୍ତର ସୀମା ଓ ସନ୍ଦେହ ?

( ଦୁଇ )

ତୁମେ ଯଦି ବୁଝିଥିବ ମୋ ମନର ଏ ସନ୍ଦେହ ଅନ୍ୟମନସ୍କତା
ଅଂଧାର ରାତିର ଯେତେ ବିଶ୍ବସ୍ତ ଓ ଯେତେ ଅବିଶ୍ବାସ...
ଆଷାଢ଼ର ମେଘ ଯଦି ଆସୁଥିବ ନଇଁ ଗାଢ଼ ହୋଇ
ଦେହର ପୃଥିବୀ ଘେରି ତୁମ ମନର ଆକାଶ...

ତୁମେ ଯଦି ବୁଝୁଥିବ ଏ ବାଟର କ୍ଲାନ୍ତ ଇତିକଥା
ଯେତେ ବନ ହଳଗଲା ଅସରନ୍ତି ଦୁଇ କରେ କରେ...
ଆଷାଢ଼ର ମେଘ ଯେବେ ଗାଢ ହୋଇ ଆଜି ନଇଁ ଆସେ
ତୁମରି ବନ୍ଧଣାପରେ ଅବା ଶାନ୍ତି ତୁମରି ଦେହରେ...।

ଆକସ୍ମିକ ଦେହ ମୋର ପୃଥିବୀର ଘଟଣା ଜନିତ
ଆକସ୍ମିକ ଘଟଣାରୁ ଉପଜାତ ତୁମର ଏ ଦେହ
ଅସରନ୍ତି ଏ ବାଟରେ ତୁମେ ଓ ମୁଁ ସମସ୍ତର ହାତ
ମୋର ଭଲ ପାଇବାର ମୂଲ୍ୟ ଆଜି ତୁମରି ସନ୍ଦେହ... ।

ମୁଁ ତୁମକୁ ଭଲପାଏ ଜନ୍ମମୁଖୀ ସମସ୍ତର ଛନ୍ଦ ଛଳ ଯଦି
ତୁମକୁ ଘେରାଇ ଦିଏ ତେବେଇଁ ମୋର ଏ ଦେହର ସୀମିତ ପରିଧି ।

( ତିନି )

ସମୁଦ୍ରର ଢେଉ ଯେବେ ତୁମର ଏ ବେଣୀର ଢେଉରେ
ଥରେ ଆସି ବୋଳି ଦେବ ଫେଣ ଆଉ କୁହୁଡ଼ି କାକର
ପୋଛି ଦେବ କପାଳରୁ ଚନ୍ଦ୍ର ଆଉ ତାରାର ଆଲୁଅ
ଚିରଦିନ ମଉଳିବ ଫୁଲଗଛ ତୁମର ଦେହର ।

ସେଦିନ ଏ ପୃଥିବୀର ସୀମାନ୍ତରେ ଛୁଡ଼ାହୋଇ ତୁମେ
ଦେଖିବ ଏ ଆକାଶରେ ଆଜିପରି ଝୁଲିଯାଏ ମେଘ
ପତ୍ର ଯେତେ ଝଡ଼ିଯାଏ ଗୋଟି ଗୋଟି ଦିନ ଯେତେ ଯାଏ
ଆଜି ପରି ସେ ସବୁର କିଛିହେଲେ ରହେ ନାହିଁ ଦାଗ ।

ସେଦିନ ମୁଁ ଥିବ ଯଦି ଥିବ ମୋର ଆଶା ଓ ନିରାଶା
ଗଢ଼ିବାର ମୋହଥିବ ଭାଙ୍ଗିବାର ଥିବ ଅପଘଣ
ଦେହ ମୋର ଥିବ ଯଦି ସମୁଦ୍ରର ନଇବନ୍ଧ ପରେ
ମନର ଚେତନା ଥିବ ଥିବ ଏକ ସୀମିତ ଆକାଶ ।

ସେଦିନ ଏ ପୃଥିବୀର ଏ ଫଂକାଣ୍ଡି ପରିସର ବ୍ୟାପି
ମୁଁ ତୁମକୁ ଖୋଜିଯିବ ଆଜିପରି ତଥାପି ତଥାପି ।

( ଗ୍ଲୁର )

ଯଦି ମୋର ଏ ମନର ରକ୍ତମାଂସର ଚମର ପୋଷାକ
ଆଜ ଭଲ ଲାଗେ ନାହିଁ, ଏ ନସ୍ତ୍ରେଜ ପୃଥିବୀର ଦେହ
ଆଜ ଯେବେ ଘୋଡ଼ହୋଇ ଶୋଇପଡ଼େ ଫିକାଜହ୍ନ ତାରାର ଆଲୁଅ
ଆଜ ଯଦି ଏକାକାର ସମସ୍ତର ଦେହ ଓ ଅଦେହ··· ।

ତୁମର ନମୌକ ତେବେ ଖସିପଡ଼ୁ ବେଣୀ ଆଉ ଆଖିର ଭ୍ରୂଲତା
କଙ୍କାଳ ତୁମର ଆସୁ ଧଳାହୋଇ ସମସ୍ତ ଓ ଜହ୍ନ ଆଲୁଅରେ
ମୋ ଦେହର ସ୍ୱାସ୍ଥ୍ୟ ଆଉ ରକ୍ତମାଂସ ଚମର ପୋଷାକ
ଖସିପଡ଼ୁ ଉପେକ୍ଷିତ ବିସର୍ଜିତ ତୁମର ଦେହରେ ।

ପୃଥିବୀର ଏ ଦେହରେ ଖୋଜ ଖୋଜ ମୁଁ ତୁମର ମନର ସନ୍ଧାନ
ଆଜ ହୁଏ ଉପଗତ ଉପକୂଳେ ତୁମର ଦେହରେ
ମୁଁ ତେଣୁ ତୁମକୁ ଖୋଜେ ରକ୍ତେ ମୋର ଦେହର ସୀମାରେ
ତୁମର ଆତ୍ମା ବା କାହିଁ ଦେହ କାହିଁ ତୁମର ମନର ?

ମୁଁ ତୁମକୁ ଭଲପାଏ ପୁଂଜିଭୂତ ଏ ଦେହରେ ଆତ୍ମାମୋର ମନର ପିପାସା
ମୁଁ ତେଣୁ ତୁମର ଦେହ ଖୋଜେ ମୋର ଏ ଦେହରେ ସବୁ ମୋର ଆଶା ।

## ( ପାଞ୍ଚ )

ଆଷାଢ଼ର ଆକାଶରେ ମେଘନାହିଁ, ଘାସନାହିଁ ମାଟିର ଦେହରେ
ଧୂସର କେଶର ଘେରନାହିଁ ଓଠ ଚମର ପାଖୁଡ଼ା
ଶାମୁକା ଭିତରେ ନାହିଁ ସ୍ୱପ୍ନ ଦୂର ନୀଳ ସାଗରର
ସମସ୍ତ ସୂଅରେ ନାହିଁ ଜୀବନର ଭଙ୍ଗା ଆଉ ଗଢ଼ା

ତୁମର ଦେହର ଏଇ ନଗ୍ରୁଟିଆ ନଈବାଲି ପରେ
ପବନ ତ ଆସେନାହିଁ ଆଷାଢ଼ର ମେଘ ଅବାକାହିଁ ?
ମୋ ଦେହର କଆଁଖରେ ପୋଛୁଦେଇ ଖରା ଆଉ ତାତ
ତୁମର ବଢ଼ର ପାଣି ଆଜଯାଏ ମାଡ଼ି ଆସି ନାହିଁ ।

ଆଷାଢ଼ର ଆକାଶରେ ମେଘ ଆସେ ବର୍ଷା ଯଦି ଆସେ
ପୃଥିବୀ ଦେହରେ ପୁଣି ଫେରିଯଦି ଆସେ ଉର୍ବରତା
ମଣିଷର କଆଁଖରେ ଯଦି ପାଚେ ଧୂସର ଫସଲ
ପୁଣି ଯଦି ଭଲଲାଗେ ଷଣ୍ଢଷଣ୍ଢ ବ୍ୟଥା··· ।

ପ୍ରାଚୀନ ଏ ପୃଥିବୀରେ ଜୀବନ୍ୟାସ ପାଏ ଯଦି ମଣିଷର ଦେହ
ତୁମେ ଯଦି ଭଲପାଅ ତୁମେ ଯଦି ଆଜି ଭଲପାଅ !!

( ଛଅ )

ପୃଥିବୀର ଦସ୍ତାକ୍ଷମା ସ୍ୱପ୍ନ ପୁଣି ଓ ବିସ୍ମୟ
ତା ଭିତରେ ତୁମେ ଥିଲ ; ଫାଲ୍‌ଗୁନରେ ଥିଭ କୃଷ୍ଣଚୂଡ଼ା
ଶାନ୍ତ ଥିଲ ସୁଖ ଥିଲ ଦେହ ଆଉ ମନର ଶ୍ରାବଣ
ପୃଥିବୀର ଦେହ ଘେରିଥିଲ ଦିନରାତିର ପାଖୁଡ଼ା ।

ଅସ୍ତଗାମୀ ତାରା ଆଉ ଅସ୍ତମିତ ବଉଦର ବାଟ
ମିଳାଇ ଯାଇଛି ମେଘ ଦୈନ ଆଉ ଶୂନ୍ୟତାର ଦେଶ
ଦିନର ଉତ୍ତାପ ପୁଣି ଉତ୍ସବର ଶୀତ ଓ ଶୂନ୍ୟତା
ବିବର୍ଣ୍ଣ ପ୍ରକୃତି ପାଖେ ଜରାଜୀର୍ଣ୍ଣ ବିବର୍ଣ୍ଣ ପୁରୁଷ ।

ତୁମକୁ ମୁଁ ଖୋଜିଥିଲି ଦସ୍ତା କ୍ଷମା ଆଶା ଓ ସ୍ୱପରେ ।
ସ୍ୱପ୍ନ କାହିଁ ? କ୍ଷମା କାହିଁ ? ସମସ୍ତର ବିବର୍ଣ୍ଣ ବିସ୍ମୃତି.....
ରୂପକାହିଁ ରେଖାକାହିଁ ତରଙ୍ଗ ବା ଏମୋର ମନର ?
ତୁମର ଦେହରେ କାହିଁ ଯୁଗଯୁଗ ମଣିଷର ସ୍ମୃତି ?

ମୋର ଆଜ **ମୃତ୍ୟୁହେଉ**—ଜରାଜୀର୍ଣ୍ଣ ପୃଥିବୀର ଦେହ
ତୁମକୁ ମିଶାଇ ଦେବ ତୁମେ ଭଲପାଅ ବା ନପାଅ ।

## ( ସ୍ୱାତି )

ହଳଦିଆ ପୃଷ୍ଠାଯେତେ ସମସ୍ତର ଚିଠି ଆଉ ଖାତାର କାଗଜ
ମୁଁ ପଢ଼େ ଥରକୁ ଥର କେତେ ଲେଖା ଛପା କେତେ ଶ୍ରେଷ୍ଠ ଶ୍ରେଷ୍ଠ ଅସ୍ପଷ୍ଟ ଅକ୍ଷର
ଯମକ ଓ ଅନୁପ୍ରାସ ଅଳଙ୍କାର ହା ହୁତାଶ କେତେ
ବର୍ଣ୍ଣନା ଝୁରୁଣି ପୁଣି କେତେ ପ୍ରେମିକର ।

ସମସ୍ତର ଲେଖାସବୁ ପ୍ରତିଦିନ ପଢ଼ିହେବ ଯଦି
ମୋ ମନର ବ୍ୟାକରଣ ଅନୁପ୍ରାସ ତୁମର ଦେହର
ଯମକ ଓ ଯତି ପାତ ଧ୍ୱନି ଆଉ ହା ହୁତାଶ ଯେତେ
ଲେଖିରଖେ ସବୁଯଦି ହଳଦିଆ ପୃଷ୍ଠା ସମସ୍ତର...... ।

ସମସ୍ତର ପୃଷ୍ଠାଯେତେ ଗୋଟି ଗୋଟି ପଚ୍ଛକୁ ପଚ୍ଛକୁ
ମୁଁ ବୁଲୁଛି ଓଲଟାଇ ଖୋଜି ଖୋଜି ତୁମର ଉପମା
କେଉଁ କବି ପ୍ରେମିକର ହା ହୁତାଶ ଆହତ ସ୍ୱପ୍ନରେ
ଆଣିଥିଲା ଅବସାଦ ସମସ୍ତର କ୍ଷୋଭ ଆଉ କ୍ଷମା ।

ଆକାଶର ଶୂନ୍ୟତାରେ ପୃଥିବୀର ଦୁରନ୍ତ ଏ ଗତି
ତୁମର ବା ଶେଷ କେବେ ଶେଷ ମୋର ସମସ୍ତ ଓ ସ୍ଥିତି ?

## ( ଆଠ )

ଏ ରାତିର ଅରୁନ୍ଧତୀ ସପ୍ତଋଷି ସ୍ୱାତୀ ଶତଭିଷା
ଏ ଆଖିରେ ସୀମାହୀନ ଯୁକ୍ତିହୀନ ନିରୁକ୍ତ ନୀଳିମା
ଏ ମନରେ ସ୍ମୃତିହୀନ ଶୁପ୍ତିହୀନ ଚେତନା ଓ କାମନାର ସୀମା—
ଆକସ୍ମିକ ଶାନ୍ତ ଯଦ ପାଏ ଆଶା ସକଳ ପିପାସା... ।

ଜୀର୍ଣ୍ଣ ପତ୍ର ଝଡ଼ିଯାଏ ନେପଥ୍ୟରେ ଅସ୍ପଷ୍ଟ ଅସ୍ଫୁଟ
ଏ ବର୍ଷର ଶେଷଯାତ୍ରା ମର୍ମରିତ ନିଶ୍ୱାସର ଢେଉ
ଅରୁନ୍ଧତୀ, ସପ୍ତଋଷି ଚିରନ୍ତନ ଷସ୍ଥମାନ ଆସୁ—
କେନ୍ଦ୍ର ଯଦ ସ୍ଥିର ରହେ ସ୍ଥିର ରହେ ବାଟ ଓ ଅବାଟ ।

ଏ ରାତିର ଗ୍ରନ୍ଥତଳେ ଗଣିତ ମୁଁ ସ୍ୱାତୀ ଶତଭିଷା
ଆଉ ଯେତେ ସ୍ନେକଶୋଷ, ଯେତେ ମୋହ ଯେତେ କୋହ ଯେତେକ ଦ୍ୱିରୁକ୍ତ
ଯେତେ ଲୋଭ ଯେତେ କ୍ଷୋଭ ଯେତେ ପାପ ବସ୍ତୁ ଓ ବିକାର
ଭାଷାହୀନ ମୂହ୍ୟମାନ ଯେତେ ଆଶା ଯେତେବା ପିପାସା ।

ଖଣ୍ଡିତ ଆକାଶ ଜନ୍ମ ମରଣ ବା ଜୀବନର ମୁକ୍ତି
ମୁଁ କରୁଛି ଅନ୍ୱେଷଣ ପାଉନାହିଁ ସନ୍ଧାନ କାହାର

## ( ନଅ )

ତୁମର ଆଖିର ତାରା ହୁଏତ ବା ନିଶାନ୍ତର ନିସ୍ତେଜ ତାରାରେ
ରହିବ ବିବର୍ଣ୍ଣ ସ୍ମୃତି ଯୋଡ଼ିହୋଇ ମେଘ ଆଉ କୁହୁଡ଼ି ଓଢ଼ଣା
ତୁମର ଓଠର ଛିନ୍ନ ଫୁଲ କଢ଼ ପୃଥିବୀ ଦେହରେ
ହୁଏତ ରହିବ କେତେ ବସନ୍ତର ଫୁଲର ଗହଣା ।

ମୋ ମନର ଆକାଶରେ କେତେ ତାରା କେତେ ଝଡ଼ା ଫୁଲ
ମୋ ଦେହର ପୃଥିବୀରେ କେତେ ମୃତ୍ୟୁ କେତେ କ୍ଷୟ କ୍ଷତ
କେତେ ଆଶା କାମନା ଓ ଭୟ କେତେ ମେଘ ଆଉ ଖରା
ମୁମୂର୍ଷୁ ଦିନାନ୍ତ କେତେ, କେତେ ରକ୍ତ ଦିଗନ୍ତର ସ୍ମୃତି ।

ତୁମର ଓଠର ରଙ୍ଗ ଫୁଲହୋଇ ଯଦି ଫେରେ ବସନ୍ତ ସହିତ
ବିବର୍ଣ୍ଣ ତାରାରୁ ଯଦି ତୁମ ଆଖି ଲୁହ ଫେରେ ଏହି ଘାସ କାକର ଟୋପାରେ
ଏ ମୋର ବିରହ ତେବେ କେତେ ଜୀର୍ଣ୍ଣ ଝଡାଫୁଲ ପରି
ଝଡ଼ୁଥିବ ଚିରଦିନ ମୋର ଶତ ପ୍ରେମଗପ ନାଟକ ଓ କବିତା ଲେଖାରେ ।

ତୁମର ଦେହରେ କିନ୍ତୁ ବିବର୍ଣ୍ଣ ବସନ୍ତ ଯାଏ ପଦଝଡ଼ା ଦେଇ
ଆଉ ମୋର ଏ ଦେହରେ ତୁମର ଏ ବସନ୍ତର ରକ୍ତରୂପ କମ୍ପିନାହିଁ ମୋଟେ
କମ୍ପିନାହିଁ ।

# ( ଦଶ )

ମୁଁ ଯଦି ପଛକୁ କେବେ ଫେରିଚାହେଁ ମୋ ସତ୍ତାର ବ୍ୟଥା ଓ କ୍ଳାନ୍ତିରେ
ଏ ସନ୍ଧ୍ୟାର ଏ ଆକାଶ ଆରକ୍ତ ଦିଗନ୍ତ ପରେ ଧାଡ଼ି ଧାଡ଼ି ଏଇ ଝାଉଁ ଗଛ
ଆଉ ଏଇ ଗୋଧୂଳିର ବିବର୍ଣ୍ଣ ଶୂନ୍ୟତା ଧରି ତୁମର ଏ ଆଖିର ଆକାଶ
ମୋର ଯଦି ମନେ ପଡ଼େ ମୋ ମନର ଭ୍ରାନ୍ତି ଘେରି ତୁମର ଦେହର ଏଇ
ଯେତେ ସବୁ ମିଛ...

କୃଷ୍ଣଚୂଡ଼ା ପାଖୁଡ଼ାରୁ ରଙ୍ଗ ନିଭିଗଲା ପରେ ଚିଠି ଆଉ କବିତା ସେପାଖେ
ସେଦିନ ମୋ ଦିନାନ୍ତର ଧୂସର ଆକାଶ ଆଉ ଶୂନ୍ୟ ଭିତରକୁ
ମୁଁ ଯଦି ଅନାଇ ଦେଖି ହଠାତ୍ ଆଶ୍ଚର୍ଯ୍ୟ ହୁଏ କୃଷ୍ଣଚୂଡ଼ା ଫୁଲରେ କଢ଼ରେ
ତୁମର ଦ୍ୱିରୁକ୍ତି ଫେରେ ଆଧୁନିକ ଗୀତ ହୋଇ ଥିଏଟର ପାର୍କ ଭିତରକୁ—

ସେଦିନ ମୋ ନଷ୍ଟ ଲଗ୍ନ ଭିତରେ ହୁଏତ ଥିବ ଏ ପୃଥିବୀ ତଥାପି ସୁନ୍ଦର
କୃଷ୍ଣଚୂଡ଼ା ପାଖୁଡ଼ାରେ ହୁଏତ ବସନ୍ତ ଥିବ ତୁମର କବିତା ଆଉ ନାଚ ଗୀତ
ଆର୍ଟରେ କଳାରେ
ଯଦିଚ ବା ଏଠି ତାର ମୁଁ ଜାଣିଛି ମୃତ୍ୟୁ ଆସେ, ଯୁଦ୍ଧ ଆସେ, ରକ୍ତପାତ,
ରୋଗ ଆଉ ଶୋକ
ଯଦିଚ ବା ମୁଁ ଜାଣିଛି ଏଠି ଆସେ ଈର୍ଷା, ଘୃଣା, ସତୀତ୍ୱ ବି ନଷ୍ଟହୁଏ,
କ୍ଳାନ୍ତି ଆସେ ଭଲପାଇବାରେ ।

ସେଦିନ ମୋ ଦିନାନ୍ତର ସବୁ ଯୁଦ୍ଧ କ୍ଷତପରେ ସମସ୍ତର ମୁଠା ମୁଠା ଉଚ୍ଛିଷ୍ଟ
ଓ ସ୍ମୃତିର ସ୍ତୂପରେ
ତୁମେ ପୁଣି ଦେଖାଦେବ ମୋ ମୃତ୍ୟୁର ଉତ୍ସବତଳେ ହ୍ୟାଣ୍ଡଲୁମ୍
ଶାଢ଼ୀରେ ବା ଅନ୍ୟକେଉଁ ଆଖିର ତାରାରେ ?



# କାଳପୁରୁଷ

( ଏକ )

ବର୍ଷାଋତୁରୁ ନିଷ୍ଠୁର ନିର୍ମମ, ଫୁଟାଇ ରଙ୍ଗିଣି ଫୁଲ ଖତକୁଢ଼ି
କାନ୍ଥ ବାଡ଼ ମୂଳେ, ହାଡ଼ରେ ଥରାଇ ରସ, ମାଟିତଳେ ଚେର ମୂଳ ଟାଣି
ବର୍ଷାପଡ଼େ ବର୍ଷାପଡ଼େ ଝର, ଥରାଇ ମୁମୂର୍ଷୁ ଆତ୍ମା ଥୁଣ୍ଟା ଗଛ
ଶିଅ ମୂଳେ ମୂଳେ, ବର୍ଷା ପଡ଼େ ଝର ଝର ଅସରନ୍ତି ବର୍ଷା ପଡ଼େ ଝର ।
ବୈଶାଖ ଓ ଜ୍ୟେଷ୍ଠ ଖରା, ଆକାଶର ଟିଣ ଛାତ ତଳେ
ମୂର୍ଚ୍ଛାରେ ଆହତ ଯେବେ ଥିଲା ସବୁ, ସବୁ ଥିଲା ଉତ୍ତେଜନା ହୀନ
ହାଡ଼ରେ ନଥିଲା ଚେଷ୍ଟା, ସ୍ନାୟୁ ଶିରା ପ୍ରଶିରା ଭିତରେ
ଆଶାର ନଥିଲା ଦ୍ୱନ୍ଦ୍ୱ ବିରକ୍ତି ବା କାହାର ଆସକ୍ତି;
କେତେବେଳେ ଘରପୋଡ଼ି, ଝଙ୍କାପେଟ କୁକୁର ଜିଭରେ
ଟୋପା ଟୋପା ନାଳ ତଳେ ଥିଲା ଯାହା ମୁମୂର୍ଷୁ ଜୀବନ ।
                    ବେଶ ଥିଲା ଠିକ୍ ଥିଲା ସବୁ
ସେ ଦିନ ଆସିଲା ବର୍ଷା ଛିନ୍ନଭିନ୍ନ ବିଶୃଙ୍ଖଳ ଅସଂଯତ ବନ୍ଦର ସୁଅ
ପକେଟରେ ହାତ ରଖି ଚମକୃତ ବିସ୍ମିତ ମୁଁ ଛିଡ଼ାହୋଇ ମହାନଦୀ କୂଳେ
ଅବାକ୍ ମୁଁ ଲକ୍ଷ୍ୟ କଲି ଆଷାଢ଼ର ଅଶ୍ଳୀଳ ଉଦସ୍ତ ।
ସେଦିନ ବାହାରେ ବର୍ଷା ମେସ୍‌ଘର ଉଷୁମ ଭିତରେ
ବ୍ରିଜ୍ ଖେଳ ଜମିଲା ସେଦିନ
ଟିକା, ରଜା, କଲାପାନ୍, ନାଲିପାନ୍, ଚାହାକପ୍, ସିଗାରେଟ ଧରି
ସେ ଦିନ ଆସିଲା ଫିଟି ବେଣୀପରି ସ୍ୱପ୍ନକାନ୍ତ ଆଷାଢ଼ ଶ୍ରାବଣ ।
            ମନେ ପଡ଼େ ଦେଢ଼ବର୍ଷ ତଳେ
ଦେଢ଼ବର୍ଷ ତଳେ ଥରେ ପଡ଼ିଥିଲି ପ୍ରେମରେ ତୁମର ।
କହୁଥିଲ କାନେ କାନେ ଝରିପଡ଼ୁ, ବର୍ଷାପରି ସବୁ ଝରିପଡ଼ୁ
ତୁମର ବେଣୀରୁ ଫିଟି ଝରିପଡ଼ୁ ଆଷାଢ଼ ଶ୍ରାବଣ ।

ଏକରେ ଅନ୍ଧାର ଉଠେ ଗିଳି ରେଖା ଆକାର ପ୍ରକାର
ସୀମିତ ମୋ ପୃଥିବୀର ଦିଗନ୍ତରେ, ହଜିଯାଏ ଉପର ଓ ତଳ
କ୍ଳାନ୍ତ ମୋର ଦେହ ଘୁପି ମାଡ଼ିଆସେ ବାଲିଚର ମାଡ଼ିଆସେ ବାଲି ଓ ଅନ୍ଧାର ।
ପାଦ ଯେବେ ଛନ୍ଦିଦିଏ ଅନ୍ଧାରରେ ଘୁଡ଼କଙ୍କ ନଷ୍ଟା
ଦେହ ମୋର ଘେରି ରଖେ ସ୍ତୁପ ସ୍ତୁପ କୁଢ଼ କୁଢ଼ ବାଲି ଓ ଅଙ୍ଗାର
ନିରର୍ଥକ ଆତ୍ମହତ୍ୟା ନିରର୍ଥକ ଯେତେ ଅପବ୍ୟୟ
ବୋଧିଦ୍ରୁମ ତଳେ ଅବା ଫାଶିଦିଆ ବରଗଛ ତଳେ
ଶ୍ଳୋକ ଶୋଷ କମି ନାହିଁ, ସରି ନାହିଁ, ଲୋପ ପାଇନାହିଁ ।

ଭୋକ ମରି ଯାଇ ନାହିଁ ନିଗୁଟିଆ କଣ୍ଟକ ଗଳିରେ
ଆଜି ତେଣୁ ଗଡସ୍ଥାନ ଶ୍ରେଷ୍ଠ ଏକ ବର୍ତ୍ତମାନ ଧରି
ଗଳି ପରେ ଗଳି ଡେଉଁ କୁଢ଼ କୁଢ଼ ବାଲି ଡେଉଁ ଡେଉଁ
ମୁଁ ଆଜି ଗ୍ଳାନି ଖୋଜି ନାହିଁ ଆଉ ଜନ୍ମବାର ଡୁମ୍ଚୁପ୍ ପବନର କଥା
କୁଢ଼ କୁଢ଼ ଅଙ୍ଗାର ଓ ଅନ୍ଧାରର ସୁଡ଼ଙ୍ଗ ସେ ପାଖେ
ଆଇସ୍କ୍ରୀମ ଲେମନେଡ୍ ଝରଣାର ନିରୂକ୍ତ ମମତା ।

ହେ ଅକ୍ରୂର, ହେ ଉଦ୍ଧବ ସଖା ମୋର ପ୍ରାଣର ଦୋସର
ରୁହ ରୁହ ଛିଡ଼ାହୁଅ ପିଠିରେ ମୋ ତୃମପଣ ବୋଝ
ଅନ୍ଧାରରେ ପାଦ ଯେବେ ଛନ୍ଦିଦିଏ ଘୁଡ଼କଙ୍କ ନଷ୍ଟା
ଶୁଖେ ଗ୍ରୀଡ ଭାଙ୍ଗେ ହାଡ଼ ବଢ଼ି ଉଠେ ବଢ଼ି ଉଠେ ଶୋଷ ।

ମନେ ପଡ଼େ ଦେଢ଼ବର୍ଷ ତଳେ
ପ୍ରେମରେ ମୁଁ ପଡ଼ିଥିଲି ପଞ୍ଚମରେ ଶୁକ୍ର ଅବା ଶନି
ନବମରେ ବୃହସ୍ପତି କେଉଁ କ୍ଷେତ୍ରେ ରାହୁ ପୁଣି ଚନ୍ଦ୍ରର ଚଳନ ?
ଲଜ୍ଜା ତାର୍ ଯଦି ଆସେ
ଆକାଶରେ ଜନ୍ମିଯାଏ ହଠାତ୍ ଲାଲ ହୋଇ
ଖଡ଼ିରନ୍ଧ୍ର କହିଥିଲେ ଜ୍ୟୋତିଷ ସେ ସପ୍ତ ପୁରୁଷର
ପଶ୍ଚିମରୁ ଯେ ଆସିବ ନାରୀ ଅବା ଅର୍ଦ୍ଧ ନାରୀ କମ୍ବା ଖଞ୍ଜ ବିକୃତ ପୁରୁଷ
ବାମ ଅଙ୍ଗ ପଙ୍ଗୁ ତାର ବର୍ଣ୍ଣ ହେବ ଈଷତ୍ ପିଙ୍ଗଳ
ତା ସହିତ ସହବାସ ଅବା ଉପବାସ
କଦାଚିତ୍ ନକରିବ, ଚକ୍ଷୁହାନି, ଅଙ୍ଗହାନି, ହାନି ହେବ ଆୟୁଷ ତୁମର ।

ପ୍ରେମରେ ମୁଁ ପଡ଼ିଥିଲି, ମ୍ଳାନ ଜହ୍ନ ବଉଦ ଭିତରେ
ଆଉ ନଈ ପଠା ଚୁମି ରୋମାଞ୍ଚିତ ହେଉ
ସେ ଦିନ ରାତିରେ ଯେବେ ତୁମେ ମୁଁ ଫେରିଲୁ ଘରକୁ
ଅସ୍ତବ୍ୟସ୍ତ ସେ ବେଣୀରେ ପଡ଼ିଥିଲା ଶାନ୍ତ ହୋଇ ଢେଉ
ରାତିର କାକର ସବୁ ଥଣ୍ଡା ହୋଇ ଏକଜୁଟ ହୋଇ
ତୁମର ଆଖିର ତଳେ ବାନ୍ଧିଥିଲା ଜମାଟ ବରଫ
ମୁଁ କହିଲି ଭଲପାଏଁ, ଭଲପାଅ ସତେ ଭଲ ପାଅ
ମୁଁ ଶୁଣିଲି କାନରେ ମୋ ହାଡ଼ ଆଉ ମାଂସର ସ୍ପନ୍ଦନ
ମୁଁ ଦେଖିଲି ବାମ ଅଙ୍ଗ ପଙ୍ଗୁ ମୋର ବର୍ଣ୍ଣ ମୋର ଈଷତ୍ ପିଙ୍ଗଳ । ।୭୦।

ଏ ସହର ମୁହଁ ପରେ ଗୋଳି ଗୋଳି ପାଉଁଶ ଅଙ୍ଗାର
ରାତିର କୁହୁଡ଼ି ଚୁଲେ ବାଟବାରି ଗଳି ଗଳି ସଡ଼କେ ସଡ଼କେ
ରାତିର ଅଫିମ ନିଶା ଜାକି ଜୁକି ଯେବେ ଘୋଟି ଆସେ
ସଙ୍କୁଚିତ ଡେଣା କରି ଯେବେ ଆସେ ଓହ୍ଲାଇ ଆକାଶ
ମୁଁ ଭାବିଲି ଏତେ ଲୋକ ଏତେ ମାଂସ ଏତେ ସ୍ୱାଦୁ କଳା ଧଳା ସାନ ବଡ଼
ଏତେ ହାତ ଗୋଡ଼ର ସମଷ୍ଟି
ଇତିହାସ କାଗଜରୁ ଅବା କାର ଖିଆଲ୍ ଭିତରୁ
ଏମାନେ ଆସିଲେ କାହୁଁ ଝରଣାର ପାଣି ଖୋଜି
ଏତେ ଭୂତ ଭବିଷ୍ୟତ ଗୋତ୍ରହୀନ, ଗୋତ୍ରହୀନ ଏ ଅଦ୍ଭୁତ ସଙ୍ଗପାଳ ଗୋଷ୍ଠୀ
ସଡ଼କ ଧୂଳିରେ ସୁପ୍ତ ଧଇଁମାରେ ଇଟାଚୂନ ଚଟାଣ ଉପରେ
ଆଖି ଯେତେ ମାଡ଼ ଖାଏ ରେଲ୍‌ଷ୍ଟେସନ୍ ଡାକଘର ଆଡ଼େ ।୭୦।

ତଣ୍ଟି ଯେବେ ଶୁଖିଯାଏ, ରିକ୍‌ସା ଗାଡ଼ି ଘୋଡ଼ାଗାଡ଼ି ଚକ୍ର
ଆତ୍ମା ଯେତେ ଏ ସନ୍ଧ୍ୟାରେ ଯାଏ ଯାଏ ନଈକୂଳ ବୁଲି
ଏ ସବୁ ସତ ନା ମିଛ ବର୍ତ୍ତମାନ ଆଜି ଅବା କାଲି ?
ଏ ରାସ୍ତାରେ ବର୍ତ୍ତମାନ, ପୋଲ ତଳେ ଗଛମୂଳେ କେନାଲ୍ ପାଣିରେ
ଏତେ ମୁହଁଛୁଇ ପଡ଼େ, ନାକ ନାହିଁ କାନ ନାହିଁ, ନାହିଁ କିଛି ମୁହଁର ଆକାର

ଟଣ୍ଡା ଅଖି ତୋଳା ତଳେ ଖାଲି ବ୍ୟର୍ଥ ଅବ୍ୟକ୍ତ ବିଷାଦ
ଟାଇ କୋଟ୍ ପେଣ୍ଟ ଅବା ଗାନ୍ଧୀ ଟୋପି ସିଲ୍କ ଶାଢ଼ୀ ତଳେ
ଖାଲି ବ୍ୟର୍ଥ ବ୍ୟକ୍ତିମାନ ଖାଟ ଆଉ ପଡଙ୍ଗ ଶବଦ ।
ସ୍ବାତିଦାସ ଭକ୍ତି ନିସ୍ବର ଛୁଡ଼ା ହୁଏ କାର୍ ରଖି ସାକାର ଓ ପୁଣି ନିରାକାର
ପ୍ରଥମା ନାୟିକ ହସେ ତା ଦେହରେ କଳା ଶାଢ଼ୀ ରୁଜ୍ ଆଉ କ୍ରିମର
ବିକାର ।

ତା ଓଠରେ ଲାଲ ଛେପ ନମସ୍କାର୍ ନମସ୍କାର୍ ସାର୍
ସ୍ବାତିଦାସ ଛୁଡ଼ା ହୁଏ ହଠାତ୍ ନିଜକୁ ଚିହ୍ନି ମିନତି ନାୟିକ ଆସେ ମଲ୍ଲୀ-
ଫୁଲ ଫୋପାଡ଼ି ଫୋପାଡ଼ି
ସହର ଉପରେ ଯାଏ ଖସି ଖସି ଅସରନ୍ତି ଧୂସର ବଉଦ
ଧୂସର ଏ ଆକାଶରେ ନେଶି ହୋଇ ରହିଯାଏ ପ୍ରଥମା, ମିନତି ମିଶି
ରୁଜ୍, କ୍ରିମ, ଚକୋଲେଟ, ଲାଲ ଛେପ ରଖିଯାଏ ଦାଗ
ସ୍ବାତିଦାସ ଛୁଡ଼ାହୁଏ କାର୍ ରଖି କାନ ଡେରି ଶୁଣେ
ସମସ୍ବର ଛୟକାଶ ଶ୍ରାବଣରେ ଝିପି ଝିପି ମର୍ମାନ୍ତିକ ଚେଷ୍ଟାର ଶବଦ ।

( ଦୁଇ )

ଏ ବର୍ଷାରେ ଆଶା ଅଛି, ଆଶୀର୍ବାଦ ଅଛି ସ୍ବାସ୍ଥ୍ୟ ନିରୋଗ ବିଶ୍ରାମ
ନିଘୋଡ଼ ଅନ୍ଧାର ତଳେ ଅଛି ବୁଢ଼ିଅସୁରୁଣୀ ଭୁତକଥା ବାଘକଥା ଅଛି
ବୁଢ଼ିମାଆ
ଏ ବର୍ଷାର ଦେହ ତଳେ ଅଛି ଅଛି ଧାନକ୍ଷେତ ଅଛି ଅଛି ଆମ୍ବ ତୋଟା ।

ଦୂର ନଈ ଆର ପାଖ ଗାଆଁ
କାଗଜଫୁଲରେ ଗୁଡ଼ିଏ ଦେହ ଘଷି ଗାଢ଼ ହୁଏ...
(ଝରକା ସେ ପାଖେ)
ଆସୁଚି ବାହାରେ ବର୍ଷା ଡେଇଁ ଡେଇଁ ଗଛରୁ ଗଛକୁ
ଟେବୁଲ୍ ଉପରେ ଯେତେ ଛବି ବହି, ମ୍ୟାଗାଜିନ୍, ନାଲି ନେଲି ଟିଣ ଡବା,
ଚକ୍ ଚକ୍ ବୋତଲ ଉପରେ
ନାଁ ଆଉ ଟ୍ରେଡ ମାର୍କ ପଢ଼ି ହେଉ ନାହିଁ
ଯେତେବେଳେ ସୁଇଚ୍ ଟିପି ସେ ଆସି ବସିଲା ଆସ୍ତେ ଟେବୁଲ୍‌ର
ଆଇଣି ସାମ୍ନାରେ ।

ତା ଦେହ ଉପରେ ସ୍ୱପ୍ନ କ୍ଳାନ୍ତ ପୁଣି ଅଲୁଅର ମ୍ଳାନ ଇନ୍ଦ୍ରଜାଲ
ଅସଂଯତ ବେଣୀ ମୂଳେ ହଳଦିଆ ଶବନ୍‌ରେ ଢେଣୁ ଲଗେ ଶ୍ରାବଣ
ସନ୍ଧ୍ୟାରେ ।
ଆର୍ଦ୍ର ଏକ ଶିହରଣ, ଆଉ ତାର ସ୍ତବ୍ଧ ଗୁଢ ଚଳେ
ଶ୍ରାବଣର ଆକାଶ ନଏଁ ଝର ହୋଇ, ଆସେ ଆଶା ଆସେ ଅଭିସାର
ତା ଓଠର ସ୍ୱଣପାଖେ ସେଥିପାଇଁ ଖେଳି ବୁଲେ ବରନ୍ତର ଫିକାହସ
ଆଉ କ୍ଳାନ୍ତ
ଧାରା ଶ୍ରାବଣର ।
ବାହାରେ ଡାକିଲ ବର୍ଷା.........
କବାଟରେ ପବନ ବା ହାତମାରି ଠେଲି ଦେଇ ଗଲା
ରାସ୍ତାରେ ବା ଘୋଡ଼ା ଗାଡ଼ି ? ମଟର ହର୍ଣ୍ଣ ? ଜୋତା ମାଡ଼ି କିଏ ଆସି
ରାସ୍ତାରେ ବା
ଏଠି ଛିଡ଼ା ହେଲ ?
କିଏ ସେ ଡାକୁଛ ତଳେ ? କିଏ ସେ ବାହାରେ ?
ଜୋତା ଶବ୍ଦ ପାହାଚ ଉପରେ
ଆଜି ସନ୍ଧ୍ୟା ବର୍ଷା ଝର । ଝର ବର୍ଷା । ଆଉ ସବୁ ଭଲତ ତୁମର ।
ଭଲ ସବୁ । କଣ ଭଲ । ସବୁ ଭଲ କିଛୁ ନାହିଁ ଖରାପ ଖବର ।
ଆସ ଆଜି, ତମେ ଆସ, ମୁଁ ତୁମର ଅପେକ୍ଷାରେ, ଶ୍ରାବଣର ଛିନ୍ନଭିନ୍ନ
ଫୁଲ ଓ କବିତା
ମୁଁ ଯଦିବା ଏତେଦିନେ ତୁମକୁ ପାଇଚି ଖୋଜି ମୋ ଦେହରେ ଜଳିଯାଏ
ଆଜି କିନ୍ତୁ ଜୀବନର ଚିତା ।
ଚାଲ ଆଜି ତୁମେ ଚାଲ, ବାହାରେ ବର୍ଷାର ଡାକ ନୂଆ ଛବି ଆଜି ସିନେମାରେ
ବାହାରେ ମେଘର କ୍ଳାନ୍ତ ଫେରି ଆସ ମୋ ପାଖକୁ ।
ପାନଛେପ ଦାଗ ପୁଣି ରୁମାଲ୍‌ରେ ତୁମର ଶାଢ଼ୀରେ ?
ତୁମେ ରୁହ ଛିଡ଼ା ହୁଅ ଆଲୁଅର କେନ୍ଦ୍ର ଖୋଜି ।
ତୁମେ ଆସି ଛିଡ଼ା ହୁଅ ହାତଟେକି ଠିକ୍ ମୋର ଗୁଢର ସାମ୍ନାରେ ।
ବାହାରେ କାହାର ଶବ୍ଦ ? ନୁହେଁ ନୁହେଁ କେହି ନୁହେଁ
ବର୍ଷା ଓ ମେଘର ଡାକ ଶବ୍ଦ ପବନର ।
ତୁମେ ଆସି ଛିଡ଼ା ହୁଅ କେନ୍ଦ୍ର ଖୋଜି ଆଲୁଅର
ମୁଁ ତୁମର ଦେହ ଆଡ଼େ ଖୋଜି ଯିବ, ଖୋଜିଯିବ ସତ୍ତା ମୋର 'ସ୍ଥିତି ମୋର,
ଝର କେନ୍ଦ୍ର ମୋର ଏ ଦେହର ।

## ପୁଣି କିଏ ?   କାହିଁ କିଏ ?

ଝୁଲ୍ ଭୁଲ୍ ଭୁଲ୍ ଖାଲି ବାହାରେ ତୋଫାନ ବର୍ଷା ଶବ୍ଦ ପବନର
ମୁଁ କିନ୍ତୁ ପାରୁଚି ଶୁଣି ଏଇ ବର୍ଷା ଝଡ଼ତଳେ ହାଡ଼ ଆଉ ମାଂସ ତଳେ
ଶବ୍ଦ ସମସ୍ତର ।
ଚୁପ୍ କିଆଁ ରହିଗଲ, କଥାକୁହ କଥାକୁହ, ଆଜି ଘରେ କିଚ୍ଛିଟିଆ ଉରମାଡ଼େ—
କାଲ୍ଧ କଥା କୁହ ।
ମୁଁ ଶୁଣେ କାନରେ ମୋର, ଠିକ୍ ମୋର ପଛଆଡ଼େ
ପାଦ ଶବ୍ଦ ସମସ୍ତର, ଘୁମ୍ ଚୁପ୍ କଥା ସମସ୍ତର
ଏ ବର୍ଷା ସନ୍ଧ୍ୟାରେ ଆଜି କିଛି ଭଲ ଲାଗେ ନାହିଁ, ଖରାପ ଲାଗେ ଭାରି ଖରାପ
ପ୍ରେମ ଫ୍ରେମ ବାଜେ ସବୁ ଗୁମର ଏ ଫିଲ୍ମ କାମିଜ ଗୁମର ଏ ଲକ୍ସ ସାବୁନ ହସ
କୁହ କୁହ କଥା କୁହ ଖରାପ ଲାଗେ ଭାରି ଖରାପ ଛବି ଫବି ବାଜେ ସବୁ
ରେଡ଼ିଓରେ ଖାଲି ବାଜେ ଗୀତ
କୁହ କୁହ କଥା କୁହ ଚୁପ୍ କିଆଁ ରହିଗଲ, କିଛି ଭଲ ଲାଗେ ନାହିଁ,
ମାର୍କସ୍, ଗାନ୍ଧୀ ଜଗନ୍ନାଥ ଦାସ ।
ମୁଁ ଆଜି ପଢ଼ିବି ଡେଇଁ ବର୍ଷା ପାଣି ପବନକୁ, ମୁଁ ଦିବ ମୁକୁଳା କରି ବାଲି ମୋର
ଚୁଲି ଘିଅଆଡ଼ ।
କୁହ କୁହ କଥା କୁହ ଚୁପ୍ କିଆଁ ରହିଗଲ ମୁଁ ଦିବ ମଝିରେ ଚଢ଼ି ବାପଘର କିମ୍ବା
ଶାଶୁଘର ।
ମୁଁ କିନ୍ତୁ ପାରୁଚି ଦେଖି ତୁମର ଏ ପ୍ରେମ ତଳେ ଉତ୍ତେଜିତ ଗୁମର ମୁହଁରେ
ନଖ ଚିହ୍ନ ସମସ୍ତର ଗୋଲ ଗୋଲ ଆଖିର କୋରଡ଼ ।
ମୁଁ ତାର କହିଲି ସିଧା ମୁହେଁ ମୁହେଁ ଦେଖ୍ ଦେଖ୍ ତୁ ବୁଝି ପାରୁନୁ
ଜାଣୁଚୁ ଡେପୁଟି କାମ ଦିନ ଦିନ ମାସ ମାସ ରାସ୍ତା ରାସ୍ତା ପଦାରେ
ପଦାରେ
ସେଥିରେ ତା ଗୋଡ଼ ଯଦି ଖସିଗଲା କେତେବେଳେ ବର୍ଷାପାଣି ପଶିବା ଗ୍ରେପାରେ
ତୁ ସିନା ରହିବୁ ଚୁପ୍, ମନେ ମନେ ସବୁ ରଖି, ତୁ ସିନା ରହିବୁ ଚୁପ୍
ଅନ୍ଧାରୁଆ ଗଳି ଆଡୁଆଲେ
ତୁ ମଧ୍ୟ ସେଥିରେ ଯାଉ ମୁକ୍ତ କରି କାଳି କରି, ସେ ଆସିଲା ମୋ ଘରକୁ
ତା ଘରକୁ
ସେ ଗଲା ସଏଲ୍ ନେଇ କୋଉ ନର୍ସ ମାଷ୍ଟରାଣୀ ଆଡ଼େ—
ସେ ପୁଣି ତ ଜାଣି ନାହିଁ ପୁଅ ତୋର ନୁହେଁ ତାର, ସେ ପୁଣି ତ ଆସ୍ଥା ରଖେ
ତୋର ସଙ୍ଗ ଧଳା ସଖିତ୍ୱରେ ।

ସେ ଚାହିଁଲା ମୋ ଆଡ଼କୁ (ଏଃ : ଦାନ୍ତ ଯାକ ସବୁ ତାର ଆସିଲାଣି ତଳକୁ ଓହ୍ଲାଇ,
କିଏ ତାକୁ କସ୍ ଦେବ ରମୁର ବା ଦୋଷ କଣ ?) ସେ କହିଲା ହସି ହସି ଜାଣେ
'ଜାଣେ ସବୁ ଜାଣେ

ନାଲକୂଳ, ନଈକୂଳ, ବି: ଏ: ଫେଲ୍ ହେଲାପରେ ତୋର ନୂଆ ଶାଢ଼ୀ ଜୋତା
।ସବୁର ମୁଁ ଇତିହାସ ଜାଣେ । ୧୫୦ ।

ସେଦିନ ଆସିଲା ବର୍ଷା ଛିନ୍ନ ଭିନ୍ନ ବିଶୃଙ୍ଖଳ ଅସଜ୍ଜିତ ବଉଦର ସୁଅ
ସଡ଼କର ବର୍ଷାପାଣି ପଶୁପଡ଼ା ପଶିବା ଗ୍ଵେପାରେ
ସେଦିନ ଫଟାଇ ମେଘ ରାତି ପ୍ରାୟ ସାଢ଼େ ଦଶ୍ ବେଳେ
ଉପରୁ ଓହ୍ଲାଇ ଆସି ଟେକାମାରି ବସିଗଲା ଅଳ୍ପ ଅଳ୍ପ ହସି ହସି
ଫିକା ନେଳ ଜହ୍ନର ଆଲୁଅ
(ଚାରିଆଡ଼ୁ ଲାଇଟ୍ ଯେତେ ଦୋକାନର ମୁନିସ୍‌ପାଲିଟିର)
ଘେରିଗଲେ ତାକୁ ଆସି ନାଲିରଙ୍ଗ ସବୁ ମୁଠା ମୁଠା ଫୋପାଡ଼ ଫୋପାଡ଼ ।
ସେଦିନ ରମୁର ଯେତେ ଫାଜିଲମି ଦୁଷ୍ଟାମି ଭିତରେ
ପ୍ରଥମ ଥର ମୁଁ ହଠାତ୍ ଲକ୍ଷ୍ୟ କଲି ତା ଆଖିର ଗୋଲ୍ ଗୋଲ୍ ନିଆଁ
ବସି ତ ମୁଁ ଲକ୍ଷ୍ୟକଲି ବର୍ଣ୍ଣ ତାର ଈଷତ୍ ପିଙ୍ଗଳ
ତାପରେ ଲାଗିଲା ମତେ ମୋ ଦେହର ଚମଯାଏ ଧୀରେ ଧୀରେ
ତରଳି ତରଳି । ୧୬୦ ।

ବ୍ଲାଉଜ୍‌ର ବୋତାମ ଦେଇ ଯାକମୁକ ଲୁଗା ମୋର ମୁହଁ ପୋଛି
ଟକିଆ ଭିତରେ
ଆଖିବୁଜି କରମାଡ଼ି ମୁଁ ପଡ଼ିଲି ଚୁପ୍‌ଚାପ୍ ଶୋଇ ।
ଖାକି ଶାର୍ଟ ପ୍ୟାଣ୍ଟ ଟୋପି ନଣ ପଣତର ଢେଉ
ତା ଭିତରେ ମିଶିଗଲା ଟାଇକୋଟ୍ ମଲମୁଣ୍ଡି ଗାନ୍ଧି ଟୋପି ପଗଡ଼ିର ଭିଡ଼
ସିଲ୍କ୍ ଶାଢ଼ୀ ଜୋତା ଛତା ଚୁଟି ଆଉ ବଟୁଆ ଗହଣା
ଧକାଧକି ଠେଲାଠେଲି ଅବାସ୍ତବ ଅତି ଅବାସ୍ତବ
ଫିକା ଜହ୍ନ ଆଲୁଅରେ ସ୍ୱପ୍ନ ଦେଖେ ଦେଖେ କଟକ ସହର ।
ମୁଁ ଶୁଣିଚି କେତେଥର ଛୁଡ଼ାହୋଇ ବର୍ଷାପାଣି ପଶିବା ଗ୍ଵେପାରେ
ଛକ ଆଉ ରେଡ଼ିଓରେ ଏସ୍‌ରାଜ ଦିଲରୁବା ସ୍ୱର
ମୁଁ ଶୁଣିଛି ଛୁଡ଼ାହୋଇ କେତେଦିନର ମଝି ସଡ଼କରେ । ୧୭୦ ।

ମୂଆର୍କ୍ଷିନ ଡାକ ଆଉ ରାମନାମ ଖାନନଗରର
ହେ ଅକ୍ରୂର ହେ ଉଦ୍ଧବ ସଖା ମୋର ପ୍ରାଣର ଦୋସର
ତୁହ ତୁହ ଛଡ଼ା ତୁହ ପିଠିରେ ମୋ ତୁମପର ବୋଝ
ମୁଁ ଯିବ ତୁମର ପର ତାର ଖୋଜ ଜନ୍ମ ଖୋଜ, ଖୋଜ ଖୋଜ
ଝରଣାର ସୁଅ
ମୁଁ ଯିବ ତୁମର ପର ଖୋଜ ମୋର ପିତାମାତା ନମ୍ରଁକ ନଷ୍ଟାରେ ଖୋଜ
ଅରୁନ୍ଧତୀ ତାରାର ଆଲୁଅ ।

( ତିନ )

ରମୁର ମରବା ଦିନ ମେଘ ହଠାତ୍ ଗ୍ରଜ଼ି ଯାଇଥିଲ
ଛକ କଟା ହେଲ ପର ରମୁ ପାଇଁ ଖୋଲା ହେଲ ଗାଡ଼
କାଠ ଆସି ଜଡ଼ା ହେଲ ତାପରେ ଠିକ୍ ଘଣ୍ଟାକ ଭିତରେ
ରମୁର କ୍ୟାଲକୋ ଧୋତ ଜଳଗଲ, ପୋଡ଼ଗଲ ଫ୍ରେଞ୍ଚ୍ କଟ୍ ଦାଣ
ପଞ୍ଚପୁଷ୍ପ ଅମୃତରେ ଏକାଦଶ ଦିନ ଉପନ୍ହରେ । ।୮୦।
ଅସ୍ଥି ତାର ଅଣାଯାଇ ପୋତା ହେଲ ପ୍ରେତ ପୁରୁଷରେ
ଖଣ୍ଡରନୂ ସଂସ୍କୃତରେ ଦେଲେ ପୁଣି ତାକୁ ଜୀବନ୍ୟାସ ।
ସେଦିନ ରମୁର ପୁଅ ସ୍କୁଲ ପିଲ ଦଶ ବରଷର
ଶ୍ଳୋକ ପଢ଼ି ଲୁହ ପୋଛୁ ନଗ୍ରୁଷ୍ଟିଆ ମଶାଣି ଉପରେ
ରମୁକୁ ଫେରାଇ ଦେଲ ଆକାଶକୁ ପବନକୁ ନଗ୍ରୁଷ୍ଟିଆ ନଈ ପନ୍ତ୍ରାକୁ ।
ତୁମେ ସବୁ ଯେତେ ଅଛ ରମୁର ଦୋସ୍ତ ଓ ୟାର
ପ୍ରଫେସର, ଇଞ୍ଜିନିୟର, ଡେପୁଟି ବା ପୁଲିସ୍ ଗୁଳରିଆ
ତୁମେ ସବୁ ଯେତେ ଅଛ ସାନ ବଡ଼ ସରୁ ମୋଟା ଟୋକା ଆଉ ବୁଢ଼ା
ତୁମେ ସବୁ ଜାଣିଥିବ ରମୁ ଥିଲ ତୁମପର ଛାଁଟ୍ କାଟ୍ ସିଧା ଓ ସଳଖ
ରମୁ ଥିଲ ତୁମପର ମୁଲାଏମ୍ ଚକ୍କଣ ଓ ଗୋଲ୍ ଲମ୍ବା ଓ
ଚଉଡ଼ା । ୧୯୦ ।

( ଚାରି )

ଗୀତ ମୋର ଭାସିଗଲ ସୁଏ ସୁଏ କେନାଲ ପାଣିରେ
ସିଗାରେଟ୍ ଖୋଳ ମୋର ଭାସିଗଲ ଥର ଥର
ସନ୍ଧ୍ୟା କମେ ପାଣି ଫାଟି ମରଗଲ ଅପନ୍ତ୍ରା ଆକାଶ ଭିତରେ

ମୁଁ ଶୁଣିଲି ପଛରେ ମୋ ଛାଡ଼ା ହେଲା କାର୍ ଆସି
ସାଧକ ଯୁବତୀମାନେ ଅତି ପ୍ରମୋଦରେ
କାର୍ ଚକ୍ର ଗ୍ଲୁଲିଗଲେ ଉଡ଼ିଗଲେ କାଉ ଓ ବାଦୁଡ଼ି
କ୍ଷଣକେ ପବନ ଗଲା ପଥ ସବୁ ତୋଳି ତୋଳି
ଉଡ଼ାଉଛି ଧୂଆଁ ଠେଲି କାଠଯୋଡ଼ି ଆଡ଼େ ।
କ୍ଷଣବଦ୍ଧ ଏ ମୂହୂର୍ତ୍ତି ସ୍ତବ୍ଧ ଏବେ ଗତିହୀନ ଘନୀଭୂତ କମ୍ପିତ କ୍ଷଥର
ଯେତେବେଳେ କମିଯାଏ ରୋଗୀ ଘର ଭିତରେ ଆଲୁଅ
ଯେତେବେଳେ ମଣଯାଏ କଲରୋଳ ଫୁଟବଲ୍ ପଡ଼ିଆ ଉପରେ
ଯେତେବେଳେ ହାତମାଣ ଥିଣ୍ଟା ଗଛ ମୂଳେ ମୂଳେ ଶିଏ ଶିଏ କୋରଡ଼
ଭିତରେ
ଅଶାନ୍ତ ପ୍ରେତାତ୍ମା ଏହି ଅନ୍ଧାରର କାହାକୁ ବା ଖୋଜି ଖୋଜି ଯାଏ
ଯେତେବେଳେ ବୋଷ ବାବୁ ସହରର ବ୍ୟବସାୟୀ
କାର୍ ଚକ୍ର ଗୃଳିଗଲେ ପଛଆଡ଼େ ରଖିଦେଇ ଆମର ଏ ଏକତାଲା ଘର
ଯେତେବେଳେ ଝରକାରେ ମୁଁ ରହିଲି ଖାଲି ଗୃହିଁ
ବେଣୀରେ ନଥିଲା ଫୁଲ ବ୍ରେଷ୍ଟ ଟାଇଟ୍ ନ ଥିଲା ଗ୍ରୀବରେ
ବାପା ଥିଲେ କଚେରୀରେ ବୋଉ ଗଲା ଧାର ମାଗି
ଉନଷଠ ପରେ ରଜ ଖାଇ ଥିଲେ ଡାକ୍ତରଖାନାରେ ।
ଅରଣ୍ୟର ଅଜଗର ମୁଁ ରହେ ଅଥର୍ବ ସ୍ଥିର ।
ମୁଁ ସହେ କତଣ ଲକ୍ଷ ଦେହ ଆଉ ମନ ଓ ଆତ୍ମାର
ମୋ ଦେହର ଗନ୍ଧ ପୃଥ୍ୱ ପୁଷ୍ପବତୀ ଗଣିକାର
ଚନ୍ଦ୍ରଖନୁ ହୁଙ୍କାର ଓ ଇଷିକାର ଲାବଣ୍ୟବତୀର
ଗୋ ମାଂସର ଗନ୍ଧ ପୁଣି ମଦ ମସ୍ତ ନାଗ୍ଡ ଗନ୍ଧ
ମୋ ଦେହରେ ପୃଥ୍ୱୀର ଯାଯାବର ଆଲୋକ ଅନ୍ଧାର ।

ଜେଲ୍ ଖାନା ପାଚେରୀରେ ଆଉଜାଇ ପିଠି ମୋର ଗୃପିରଖି ରୁମାଲ ଆଖିରେ
ମୁଁ କାନ୍ଦିଲି ଯେତେବେଳେ ପିତୃ ମାତୃ ବନ୍ଧୁହୀନ ଆୟୁ କ୍ଷୟ ବଂଶ କ୍ଷୟ
ଦେଶବାସୀ କ୍ଷୟ ପୁଣି ଧନଜନ ଲକ୍ଷ୍ମୀ କ୍ଷୟ ଧର୍ମ ପୁଣି ଗୋବ୍ରାହ୍ମଣ କ୍ଷୟ
ମୁଁ କାନ୍ଦିଲି ଯେତେବେଳେ ସମସ୍ବର ଶବ୍ଦ ବାଣ
ଜରା ମୃତ୍ୟୁ ବ୍ୟାଧି ପୁଣି ବ୍ୟାଧ ଆଉ ଘାତକର ଭୟ ।
ହେ ଅକ୍ରୂର ହେ ଉଦ୍ଧବ ସଖା ମୋର ପ୍ରାଣର ଦୋସର

ତୁମ୍ଭ ତୁମ୍ଭ ଛଡ଼ା ତୁମ୍ଭ ପିଠିରେ ମୋ ତୁମପଣ ବୋଝ
ଆଜି ଯେବେ ରାଜ୍ୟ ଯାଏ ରାଜା ଯାଏ ଗ୍ରୁରଖାର ପ୍ରଜା ଓ ପାଟକ
ମୁଁ ତୁମର ଅନୁଗାମୀ ଆଦ୍ଧ ଅନ୍ତ କାହିଁ ବା ବାଟର ?
ସେଦିନ ଆସିଲା ବର୍ଷା ଘନ ଘୋର ଅସଜ୍ଜିତ ବଉଦର ସୁଅ
ସେଦିନ ଆକାଶ ଗୁଡ଼ ଅନ୍ଧାର ଆସିଲା ଖସି
ଲାଇଟ୍ ସବୁ ନଭିଗଲା ଛିଣ୍ଡିଗଲା ଟେଲିଫୋନ୍ ତାର
ସେଦିନ ତୁମେ ଓ ମୁଁ ବାଟଭୁଲି ଯାଇଥିଲୁ
ପଣଚସ୍ଥ ଭୁଲିଥିଲୁ ଦେହ ଓ ମନର
ସେଦିନ ରାତରେ ତୁମେ ଚୁପ୍ ଚାପ୍ ଶୋଇଥିଲ ।

ସେଦିନ ତୁମର ଥିଲି ମୁଁ ମୋର ସନ୍ତାପ ନେଇ
ତୁମେ ଆଜି ମୋର ନା. କାହାର ?
ତୁମେ ଯଦେ ଶୁଣିଥିଲ ଓଁକାର ବା ମାହେନ୍ଦ୍ର ବେଳାରେ
ତୁମେ ଯଦେ ଦେଖିଥିଲ ଲୁପ୍ତ ଗଙ୍ଗା ପଥର ଓ ବରଫ ସ୍ତୂପରେ
ଅବା ଭୁଲି ତୁମେ ମୁଁ ଶୁଣିଥିଲୁ ତାରାରେ ତାରାରେ
ରାତ୍ର ଓ ଦିନର ଶାନ୍ତ ଯାତାୟତ ସ୍ପନ୍ଦନ ବା ଅକ୍ଷତ ଯୋନୀର ।
ହେ ଅନ୍ଧୁର ସଖା ମୋର ତୁମ୍ଭ ତୁମ୍ଭ ସମ୍ମୁଖେ ତୁମର
ଅନ୍ଧାର ଆସିଚି ଖସି ଆକାଶରୁ ଆବୋରି ପୃଥିବୀ
ପଛରେ ତୁମର ସ୍ତବ୍ଧ କାଲି ଆଉ କାଲି ପରେ କାଲି
ନିଷ୍ଫଳ କାଲିରେ ନଷ୍ଟ ଆଷାଢ଼ର ପ୍ରାଣାନ୍ତ ପ୍ରଶ୍ବାସ

ମୁଁ ତୁମକୁ ଖୋଜିଥିଲି କେତେ ରେଳ ପୋଲ ଡେଇଁ
କେତେ ଯୁଗ ଯୁଗାନ୍ତର ସିଂହଳ ଓ ମଳୟ ଦ୍ୱୀପରେ
କେତେ ଗଳି କୋଠା ଡେଇଁ ବିବର୍ଣ୍ଣ ପଥର ସ୍ତୂପ ବାରବାଟି ପାଚେରି
ଭିତରେ
ଗଡ଼ଖାଇ ତଳେ କେତେ ସୁଡ଼ଙ୍ଗ ଓ ଅରମା ଭିତରେ
ତୁମକୁ ଖୋଜିଲି ପୁଣି ଚଉଦ୍ୱାର ବାଙ୍କି କଟକରେ ।
ଦେଶର ଜନତା ମୋର ମୋ ଦେଶର······
ସଡ଼କର ବର୍ଷାପାଣି ପଚ୍ଚ ସଢ଼ା ପଶବା ରେପାରେ
ମୁଁ ଆଜି ପାଏ ନା ଖୋଜି ପାଦ ଚିହ୍ନ ନିଶବଦ ପ୍ରାଚୀ ଘରେ ଘରେ
ମୁଁ ଆଜି ପାରେ ନା ଶୁଣି ପାଦଧ୍ୱନି ମଣିଷର
ନିଚ୍ଛିଟିଆ କାଲିରେ କାଲିରେ ।

ମୁଁ ଆଜ କେବଳ ଶୁଣେ ଛୁଡ଼ା ହୋଇ ରାଣୀହାଟ ପଥର ପୋଲରେ
ଅସଂଖ୍ୟ ଗ୍ରାମ୍ୟାର ଏତେ ଯାତାୟତ ଆଷାଢ଼ର ପ୍ରଶାନ୍ତ ପ୍ରଶ୍ୱାସ
ମୋ ଦେଶର ନିରନ୍ନ ଜନତା…
ସହର ଉପରେ ଯାଏ ଭାସି ଭାସି ଧୂସର ବଉଦ
ଗ୍ରାମରୁ ଗ୍ରାମକୁ ଡେଇଁ ବର୍ଷା ଯାଏ ପାର ହୋଇ ଗଳି ଗଳି ମେନ୍ ରୋଡ୍ ସବୁ
ଉଦ୍ୟତ ଏ ଆଷାଢ଼ରେ ଧୂସର ସ୍ୱପ୍ନରେ
ପବନ କେବଳ ଯାଏ ନିଜକଥା କହି କହି
କ୍ଲାନ୍ତ ଆଉ କ୍ଲାନ୍ତ ପୁଣି ଏ ଗ୍ରହର ସ୍ତୁପ ସ୍ତୁପ ଭଗ୍ନ ବିଗ୍ରହର ।
ଆଜି ଯଦି ପଦ୍ମ ଫୁଟେ ପୁଷ୍କରିଣୀ ହୁଏ ଯଦି ନାଗି
ରମୁ ପାଇଁ ତୁହେ ଖୋଲି ମଦଖଟି ଦେଶୀ ଓ ବିଲାତି ।
ଆଜି ଯଦି ସନ୍ଧ୍ୟା ଫୁଟେ ନାଲି ଅବା ସଫେଦ ଗୋଲାପ
ରମୁ ଦିନେ ଗ୍ରାଉଥିଲା ସ୍କୁଲ କଲେଜ ଦେଉଥିଲା ଗୃହର ଇସ୍ତଫା
ରମୁ ଦିନେ ମିଲ ଗ୍ରାଲ୍ଡ଼ ପିନ୍ଧିଥିଲା ଖଦଡ଼ ଓ ଦେଉଥିଲା ସଭାରେ ବକ୍ତୃତା
ରମୁ ଦିନେ ଖୋଜୁଥିଲା ମୁକ୍ତି ପୁଣି ଦେହ ଆଉ ମନର ବିସ୍ତୃତି
ରମୁ ଦିନେ ଠିକ୍ ଥିଲା ତୁମ ପରି ଛାଁଟ୍‌କାଟ୍ ସିଧା ଓ ସଳଖ ।
ଦେଶର ଜନତା ମୋର ମୋ ଦେଶର ନିରନ୍ନ ଜନତା…

( ପାଞ୍ଚ )

ମଶାଲ ଆଲୁଅ ସବୁ ନିଭିଗଲା ଗୋଟି ଗୋଟି
ନାରକେଲ, ତାଳବଣ, ଝାଉଗଛର ବରଫ ଉପରେ
ପ୍ରାଚୀ ନଦୀ କୂଳେ କୂଳେ ବାଲିଚର ମାଡ଼ିଗଲା ପରେ
ଆଳତି ଘଣ୍ଟାର ଧ୍ୱନି ଚୁପ୍ ହେଲା ଯେତେବେଳେ ।
ଉତ୍କଳୀୟ ଓ ଦନ୍ତପୁରୀରେ
ତାଳପତ୍ର ପୋଥି ଆଉ ଶିଳାଲିପି ଭାରତରେ
ଗୃହଆଡ଼େ ପଢ଼ା ହେଲା ପରେ
ତୁମେ ମୁଁ ଆମେ ସବୁ ଆଜି କରୁ କାହାର ଅପେକ୍ଷା
ନିର୍ଜ୍ଜିଆ ଆମର ଏ ଟେବୁଲ ବେଞ୍ଚ ଗ୍ରେଟ ଗ୍ରେଟ କୋଠରୀ ଭିତରେ ?
ଯେ ଗିବାର ଚାଲିଗଲା ପାଦଚିହ୍ନ ଖୋଜି ଖୋଜି ତାର
ତୁମେ ମୁଁ ଆମେ ସବୁ ସମସ୍ତର ଏତେ ନଈ ଏତେ ପୋଲ ପାର ହୋଇ ଆସି
କାହାର ଅପେକ୍ଷା କରୁ ବାଲି ଆଉ ବିବର୍ଣ୍ଣ ଘାସରେ
କାହାର ଆହତ ଦେହ ରକ୍ତହୀନ ହୋଇ ଆସେ
କାହାର ବିବର୍ଣ୍ଣ ଦେହ କ୍ଷୟମାନ ବାଲି ଆଉ ବିବର୍ଣ୍ଣ ଘାସରେ ।

ନିଃଶବ୍ଦ ଏ ବାଲୁଚର ବାଲି ଆଉ ବାଲି
ବିବର୍ଣ୍ଣ ଘାସ ଓ ବାଲି ପଥସ୍ଥାନ ବିବର୍ଣ୍ଣ ପୃଥିବୀ
ଉପରେ ନିସ୍ତେଜ ଖଗ ପଥସ୍ଥାନ ବିବର୍ଣ୍ଣ ଆକାଶ
ବିବର୍ଣ୍ଣ ବାଲି ଓ ଘାସ ଶେଷସ୍ଥାନ ଶୋଷ ଆଉ ଶୋଷ
ନିସ୍ତେଜ ଧୂସର ସ୍ତବ୍ଧ ବାଲି ପୁଣି ବାଲି ଓ ଆକାଶ
ଯଦିବା ଚେତନା କେବେ ଫେରିଆସେ ଅକସ୍ମାତ୍ ନିସ୍ତେଜ ଚେତନା
ଝିଙ୍ଗାରିର ଶ୍ଳୋକ ଅବା ପବନର ଦୁରନ୍ତ୍ ଚେତନା
ଉଦ୍ଭିଦଙ୍କ ମୂଳେ ମୂଳେ ଥୁଣ୍ଟାଗଛ କୋରଡ଼ ଭିତରେ
ଯଦିବା ଚେତନା ଫେରେ, ଅସ୍ଥି ମାଂସ ଚମରେ ବା
ଲୁଡ଼କଙ୍କ ଘାସର ଚେତନା ।

ଯଦିବା ଚେତନା ଫେରେ
ବାଲି ଆଉ ବାଲି ପୁଣି ଘାସ
ଘାସର ବିଛଣା…
ଗ୍ଲେଟ ଗ୍ଲେଟ ଢେଉ ଆଉ
ସାନ ସାନ ମାଛର ଝରଣା
ଝରଣା
ଘାସ ଓ ମେଘ
ମେଘ ଓ ମୟୂର
ଝିଙ୍କାରିର ଶ୍ଳୋକ ନୁହେଁ
ଶୋଷ ନୁହେଁ ହତାଶ ବାଲିର ।

ଚେତନା ଯଦିବା ଫେରେ କାନନ ଓ ଉପବନ ପରେ
ଅସଂଯତ ନୀଳବେଣୀ ଯନ୍ତ୍ରନୀଳ ଆଖିପତା ତଳେ
ଆଷାଢ଼ ବର୍ଷାର ମ୍ଳାନ ସ୍ୱପ୍ନ କେଉଁ ତାପସ କନ୍ୟାର
ଚେତନା ଯଦିବା ଫେରେ କୁହୁରବ କଦମ୍ବରେ
ହୋମ ଅଗ୍ନି ପରେ,
ସକାଳର ଆକାଶରେ ବୀଣା ଅବା ଧ୍ୱନିତ ଝଙ୍କାର
ଚେତନା ଯଦି ନା ଫେରେ!
ଯଦି ଫେରେ ମୁମୂର୍ଷୁ ଦେହରେ
ଥୁଣ୍ଟା ଗଛ ମୂଳେ ମୂଳେ
କୋରଡ଼ ଭିତରେ

॥ କବିତା ସମସ୍ତ-୬୫ ॥

ଝିଙ୍କାରୀ ଶୋଷ ନୁହେଁ·········
ପାଣି ନୁହେଁ ମେଘ ନୁହେଁ ବାଲି ଆଉ
ଖାଲି ବାଲିଚର ।
କିଏ ତୁମ ପାଖେ ପାଖେ କିଏ ତୁମ ଆଗରେ ପଛରେ
ଘୂରି ଘୂରି ତୁମେ ଯଦି ଠିଆ ହୁଅ ହଠାତ୍ ବାଲିରେ
ମୁଁ ଗଣେ ତୁମେ ଓ ମୁଁ ଏକ ଦୁଇ ଆମେ ଦୁହେଁ
କିଏ ତୁମ ପାଖେ ପାଖେ ନଗ୍ନଛିଟିଆ ଏ ବାଲି ଭିତରେ
ନାହିଁ ଗୋଟି ପରିଚୟ ନାହିଁ ଲେଖା ଆକାର ପ୍ରକାର
ନାରୀ ବା ପୁରୁଷ ଅବା ନପୁଂସକ ଅବା ବନ୍ଧ୍ୟା ପୃଥିବୀର ଶୋଷ
କାହାର ଆହତ ଦେହ ହତ ହୁଏ ଏ ବାଲିରେ ।୩୨୦।
କିଏ ତୁମ ପାଖେ ପାଖେ ପ୍ରେତାତ୍ମା ବା ମାଟିର ମଣିଷ ।
କାହାର ପାଦର ଶବ୍ଦ ନେପଥ୍ୟରେ ଦଳିତ ଓ ଆହତ ପୃଥିବୀ
ଭିକ୍ଷୁ ଓ ଶ୍ରମଣ ଥିବା ମରହଟ୍ଟା ମୋଗଲ ପଠାଣ
କାହାର ରଥର ଚକ ସମବେତ ଅଶ୍ୱ ହସ୍ତି ଅବା ପଦାତିକ
ସନ୍ଧ୍ୟାର ଶୋଣିତ ମନ୍ଥି ଆକାଶର ଦେହରେ ଦେହରେ
ହଠାତ୍ ବା ଫୁଟି ଉଠେ ଚନଘଣ୍ଟ ତ୍ରିଶୂଳ ନିଶାଣ
ଅକସ୍ମାତ୍ ସ୍ତବ୍ଧ ହୁଏ ଅଭିଭୂତ ଅବାକ୍ ପୃଥିବୀ
ମଶାଲ ଆଲୁଅ ଗଲା ନିଭି ନିଭି ଆକାଶ ଉପରେ
ବାଲିପରେ ବାଲି ଡେଇଁ ଦେହପରେ କେତେ ଦେହ ଡେଇଁ
ମୁଁ ଆଜି ଅପେକ୍ଷା କରେ ସୂର୍ଯ୍ୟର ଉଦୟ ପୁଣି ବର୍ଷା ଆଉ ମେଘର
ଉଦୟ ।୩୩୦।
ମୁଁ ଆଜି ତଥାପି ଖୋଜେ ଆଦି ଜନ୍ମସ୍ଥାନ ମୋର
ମୋର ଆଦି ପିତାମାତା ଅରୁନ୍ଧତୀ ତାରାର ଆଲୁଅ ।
ଏକ ଦେହେ ଜନ୍ମ ନେଲି ପୁରୁଷ ମୁଁ ସେହି ଦେହେ ନାରୀର ଶୃଙ୍ଗାର
ମୋ ପାଖେ ଏକାଠି ହେଲା ସିଲ୍କି ଶାଢ଼ୀ ପେଣ୍ଟ କୋଟ୍ ଧ୍ୱଜଭଙ୍ଗ
ପ୍ରସୂତ ଯନ୍ତ୍ରଣା
ମୁଁ କାନ୍ଦିଲି ଯେତେବେଳେ ଯାଜପୁର କଟକରେ, ରାଜାଙ୍କର ଥିଲା ନାମେ
ଏକମାତ୍ର ପୁତ୍ର ଓ ଦୁହିତା······

ଆହେ ରାଜା ପରୀକ୍ଷିତ ତକ୍ଷକର ଦଂଶନେ ତୁମର
ଦେହାନ୍ତ ହେଲାତ ରାଜା ପ୍ରାୟଶ୍ଚିତ ଗୋଟିଏ ପାପର
କିନ୍ତୁ ମୋର ସମ୍ମୁଖରେ ଏ ବିଚାର ଏକ ପାଦ ବିଶିଷ୍ଟ ବୃଷଭ
ପୁଣି ଏକ ଭଦ୍ରଲୋକ ଧଳାଧୋତି ଓ ପଞ୍ଜାବୀ ଓ
ଧଳା ଟୋପି ଧଳାକାର ବର୍ଣ୍ଣ ପୁଣି ଈଷତ୍ ପିଙ୍ଗଳ
ଯଷ୍ଟିର ଆଘାତ ଆଉ ବୃଷଭର ଆର୍ତ୍ତନାଦ······
ଏ କାଳ ତୀର୍ଥରେ ରାଜା ଶେଷକିସ୍ତା ସମାପ୍ତ ତୁମର ।
ହେ ଅନ୍ଧୁର ସଖା ମୋର ପ୍ରିୟ ମୋର ପ୍ରାଣର ଦୋସର
ତୁହ ତୁହ ଛଡ଼ା ତୁହ ତୁମେ ଖୋଜ କାହାର ଆଶ୍ରୟ
ସଂଘର ଆଶ୍ରୟ କାହିଁ, ଏ କାଳରେ ଶ୍ଳୋକ ଆଉ ଶ୍ଳୋକ
କିଏ ତୁମ ମାତା ପିତା ଏ କାହାର ଅସ୍ତ ବା ଉଦୟ ?

ରାମକୃଷ୍ଣ ମିଶନରୁ କେତେ ବାଟ ଏମାର ମଠକୁ ?
ମୁଁ କେତେ ବୁଲିଛି ବାଟ ଦିଗରୁ ଦିଗନ୍ତ କେତେ ନଷ୍ଟ କେତେ ତାରାର ସ୍ୱପ୍ନରେ
ମୋ କନ୍ୟାର ଦେଶଦ୍ରୋହ, କନ୍ୟାଦ୍ରୋହ ମୋ ପିତାର ଶତଶତ
ସ୍ୱଜାତିଦ୍ରୋହ ପରେ
ମୁଁ ଆଜି ତଥାପି ବୁଲେ ପିତୃହନ୍ତା ଆତ୍ମା ମୋର
ରୋମ ଆଉ ବେବିଲୋନ୍ ମିଶରର ପ୍ରେତାତ୍ମା ସହିତ······
ଅଜ୍ଞାର ଯଦି ବା ଆସେ ଦେଖି ରେଖା ଆକାର ପ୍ରକାର
ମାଂସ ଲୋଭି ଭଦ୍ରଲୋକ ଧଳାଧୋତି ପଞ୍ଜାବୀ ଓ ଧଳା ଟୋପି ଧଳାକାର···
ମୋ ଦେହରେ ଦାନ୍ତ, ନଖ, ଶତ ଶତ ଚଞ୍ଚୁର ଆଘାତ ।
ରାମକୃଷ୍ଣ ମିଶନରୁ କେତେ ବାଟ ଏମାର ମଠକୁ ?
ବର୍ଷା କେବେ ଆସିଥିଲା ତାମ୍ରଲିପ୍ତ ସୁରଟ ଓ ସିଂହଳ ଦ୍ୱୀପରେ
ବର୍ଷା କେତେ ଫେରୁଥିଲା ବନ୍ଧୁଣାବନ୍ଦରୁ ଧାନେ ନୂଆଦିଲ୍ଲୀ, କଲିକତା,
କଟକର ସଙ୍କୀର୍ଣ୍ଣ ବାଟରେ······
ଆଜି କେବଳ କ୍ଳାନ୍ତ ଯେତେ ଶୂନ୍ୟତା ଓ କାଠଘୋଡ଼ା କାଳର ବ୍ୟର୍ଥତା
କାଗଜର ବିବରଣୀ, ଶୋକ ସଭା ସଂକ୍ଷିପ୍ତ ଜୀବନୀ ।

॥ କବିତା ସମଗ୍ର-୬୩ ॥

ସ୍ମୃତ ଫଣ୍ୟା ସମାଜ ବା ସ୍କୁଲ କଲେଜ ପାର୍କ ଲାଇବ୍ରେରୀ......
ତା ଆଗରୁ ତୁମେ ଓ ମୁଁ ଏନ୍ଧ ଦୃଷ୍ଟି ସୀମିତ ବିବର୍ଣ୍ଣ
ଧୂସର ଆକାଶ ମର୍ଚ୍ଛି ସନ୍ଧ୍ୟା ଆସେ ଅବା ଆସେ ସାତ୍ତ୍ୱିକ ଶ୍ରାବଣ
ଆମର ଅପେକ୍ଷା ରହେ ପାର୍ଟି ଆଉ ନିର୍ବାଚନ
ଦୂଷିତ ଆତ୍ମାର ଖେଦ ଜୀବନର ଦୂଷିତ ଦୁଃସ୍ୱପ୍ନ ।
ଜୀବନର ଯେତେ ଗୀତ ଲିପିଯାଏ ବାଲିକୁଦ ଉପରେ ଉପରେ
ଦୀପ ଓ ମଶାଲ କେତେ, କେତେ ଯୁଦ୍ଧ ଧର୍ମଘଟ, ପ୍ରୟୋଗ ଓ ସମ୍ମେଳନ ପରେ
କେତେ ଯୁଗ ଜନ୍ମ କେତେ ଫୁଟ୍ ଲାଇଟ୍, ପଦକ୍ଷ ଓ ଏନ୍‌କୋର ପରେ
ପ୍ରାଚୀର ବିବର୍ଣ୍ଣ ବାଲି ଜୁଡ଼ି ଜୁଡ଼ି ଜମିଯାଏ ଭଗ୍ନ କେତେ ମୁଖଶାଳା
ଭଗ୍ନ କେତେ ବିହାରର ସ୍ତୁପ...... ।୩୭୦।
ଏ ଗ୍ରହର ନଷ୍ଟ ଯାତ୍ରା ଆଜି ଯଦି ଅନ୍ଧାରରୁ......
ଏ ଗ୍ରହର ନଷ୍ଟ ଯାତ୍ରା ଆଜି ଯଦି ମରଣରୁ......
ଏ ଗ୍ରହର ନଷ୍ଟ ଯାତ୍ରା ଆଜି ଯଦି ଅସତରୁ......
ମୃତ୍ୟୁର୍ମାଂ
ଅସତୋ ମା
ତମସୋ ମା
ମୃତ୍ୟୁର୍ମାଂ...ମୃତ୍ୟୁର୍ମାଂ...ମୃତ୍ୟୁର୍ମାଂ
ଅମୃତଂ
ଗମୟ ।୩୭୧।



# ଅକ୍ରୂର ଉବାଚ

ସନ୍ଧ୍ୟା ଆସେ ଦୂରାଗତ କ୍ଳାନ୍ତ ବାଟୋଇର
ନିଷ୍ପ୍ରଭ ଆଖିରେ ଆଣି ଅପରାନ୍ତ ବାଟର ନିରାଶା ।
ସେଦିନ ଠିକ୍ କ୍ଳାନ୍ତ ତାର ଆଖିପତା ଘୋଡ଼ାଇ ସନ୍ଧ୍ୟାର
ଛାଇ ଆଉ ବିବର୍ଣ୍ଣତା ଭାରି ହୋଇ ଆସୁଥିଲା—
ଧୂଳି ଆଉ ଖାଲି ଢିପ, ଦିନକର କ୍ଳାନ୍ତି ଆଉ ଖରା;
ଠକ୍ ଠକ୍ ଘୋଡ଼ା ଟାପୁ, ଧୂଳି ଆଉ ଘୋଡ଼ାମୁହଁ ଲଗାମ୍‌ରେ ଫେଣ
ଆଉ ତାର ଥକା ଦେହ ଗଣ୍ଠି ଗଣ୍ଠି ହାଡ଼ ଓ ଚମରେ
ବାଟର ନିରାଶା ଆଉ ରକ୍ତମାଂସ ସ୍ନାୟୁର ବିରକ୍ତି ।

“ତୁମେ ମୋର ଏ ଦେହର ଚିରନ୍ତନ ଏ ଯାତ୍ରାର ଧୂସର କ୍ଳାନ୍ତିରୁ
ଆଜି କିଣ ମୁକ୍ତି ଦେବ ସମସ୍ତ ଓ ସମସ୍ତର ସଂଗ୍ରାମ ଓ ରକ୍ତପାତ ଠାରୁ ?
ତୁମେ ଯଦି ମୁକ୍ତି ଦିଅ ମତେ ଆଜି ମୋ ଦେହର ପୁନର୍ବାର ଦ୍ୱିରୁକ୍ତି ଭିତରୁ ।
ସାରଥିର ସାର୍ଥକତା ହୁଏତ ଆଜିର ଏହି ଯାତ୍ରାରେ ମୋ ତୁମର ସହିତ;
ହୁଏତ ବା ସାର୍ଥକତା ତୁମର ହାତର ଶଙ୍ଖ ଚକ୍ର ଚିହ୍ନ ତଳେ
କିନ୍ତୁ ମୋର ବହୁ ଜନ୍ମ ଜନ୍ମାନ୍ତର କାମ କ୍ରୋଧ ଲୋଭ ମୋହ ଜରାମୃତ୍ୟୁ ପରି
ତୁମର ଏ ଆଶୀର୍ବାଦ ଅନ୍ୟ ଏକ ପିପାସା ଓ ଦେହର ଅନ୍ୟ ଉପାଦାନ
ତେଣୁ ମୋର ଭଗବାନ ଏହି ଯାତ୍ରା ଶୁଭ ହେଉ; ତୁମର ଓ ମୋର
ପୃଥିବୀର ଏହି ଦେହ ଘୋଡ଼ାଇ ରଖିଛି ଯଦି ତୁମର କାରୁଣ୍ୟ ଆଉ ନିଷ୍ଠୁରତା
କ୍ଷମା ଆଉ ତୁମର ସଂହାର———
ଏ ଯୁଗର ଏଗ୍ଲାନିରେ ତୁମର ଯଦିବା ଏଠି ସମ୍ଭାବନା;
ତଥାପି ଏ ଯାତ୍ରା ମୋର ଶୁଭ ହେଉ ପୂର୍ଣ୍ଣ ହେଉ ତୁମର କ୍ଷମାରେ
ଦେହର ସୀମାନ୍ତ ଡେଇଁ, ପାରି ହୋଇ କାରୁଣ୍ୟ ଓ ତୁମର ସଂହାର—”
ସେ ଦିନ ସନ୍ଧ୍ୟାରେ ଯେବେ ତା ଦେହର କ୍ଳାନ୍ତି ପାଇ ମୁଠାରେ ଲଗାମ୍
ତାର ଆସୁଥିଲା ହୁଗୁଳ ହୁଗୁଳ

ଠକ୍ ଠକ୍ ଘୋଡ଼ା ଟାପୁ ପଥର ଓ ଖାଲ ଡେଇଁ ଯେଦିନ କ୍ଲାନ୍ତରେ
ତାର ଯେତେବେଳେ ଅସହ୍ୟ କଷ୍ଟ ହୁ
ତା ଆତ୍ମାର ଅବସନ୍ନ ନଣେଦ ବିଳାପ ପରି ସେଦିନ ଆକାଶ ତଳେ ସ୍ଥିର
ଯେବେ ହୋଇଗଲା

ଅବସ୍ଥାନ୍ତ ନଣେଦ ପଦନ
ଯେତେବେଳେ ରଥ ତାର ରାସ୍ତାର ହଠାତ୍ ମୋଡ଼ ବୁଲିଗଲା ପରେ
ସାମ୍ନାରେ ଯମୁନା ନଦୀ ସନ୍ଧ୍ୟାର ଆକାଶ ଧରି
ମାଲଚନଟାର ପାର୍କ, ଆଉ ଗୋପ ବଜାରର ଲୋକଭିଡ଼ ଦୋକାନ ଆଲୁଅ ।
"ମୋ ଯାତ୍ରାର କ୍ଲାନ୍ତ ଭଣ ଶେଷ ଆଜି ଏଇଠାରେ !
ଯୁଗରୁ ଅନେକ ମୋ ପାଦର ଦରଜ ଓ ମୋ ଘୋଡ଼ା ଟାପୁର ଧୂଳି
ମୋ ଗାଡ଼ିର ଭଙ୍ଗାଚକ, ମୋ ଆଖିର କ୍ଲାନ୍ତ ଝଡ଼୍ବଳୟ
ମୋ ସତ୍ତ୍ୱର ଭ୍ରାନ୍ତ କଣ ଆଜି ଏଇଠାରେ
ମୋ ମାଂସର କ୍ଲେଦ ଶୋଷ ପାପ ପୁଣ୍ୟ
ମୋ ଆତ୍ମାର କାତରତା, ଭକ୍ତି ଆଉ ଅହଙ୍କାର, ଧର୍ମ ଆଉ ମୋକ୍ଷବାଦ
ଆଧ୍ୟାତ୍ମିକ ଚେଷ୍ଟାର ବଳୟ !
ମହାପ୍ରଭୁ ମୃତ୍ୟୁ ଦଣ—ଏଇ ଯାତ୍ରା ଶୁଭ ହେଉ ତୁମର ଦୟାରୁ
ଏଇ ଯାତ୍ରା ହେଉ ମୋର ଶେଷଯାତ୍ରା ଏ ଦେହରୁ
ତୁମର ସତ୍ତାର ଭେଟିଁ
ବହୁତ ବହୁତ କ୍ଲାନ୍ତ, ପୁନର୍ଭୁତ ଏ ଆତ୍ମାର
ଆଉ ତୁମ ଦୟା କ୍ଷମା କରୁଣାର ସମୁଦ୍ର କୂଳରୁ ।"

●●

# ସିଢୁଆ

( ଏକ )

ଧାନସିଢ଼ି ନଈ ସିନା ଏଠି ନାହିଁ, ଏଠି ଶୀର୍ଣ୍ଣ ସିଢୁଆ ନଈରେ
ଗାଢ ଶ୍ୱେର ଅନ୍ଧାରରେ ତାରା ଜ୍ୱଳେ ଝବଣ୍ଡି ଶ୍ରାନ୍ତାନ
ଏଠି ବାଲି ଅପଲବ ତେଇଁ ଘାସ ଦୁବୁଚଆ ବଣ
ଗାଢରେ ପବନ ଆସେ ଖୋଜ ଖୋଜ ଝରକାରେ ଆଖିପତା ଡବଣ ଆଲୁଅ ।
ଏଠି ମୃଗ କୋଲଥର କଆଁସରେ ଜହ୍ନ ଆସେ ନଗ୍ନଚିଆ ଅତଡ଼ା ଉପରେ
ଏଠି ବି ଅନ୍ଧାର ଆସେ ଘାସ ଧୋଇ କୁହୁଡ଼ିରେ
ଏଠିବି ବାଦୁଡ଼ି ଡେଣା କାକର ଝଡ଼ାଇ ଯାଏ ତୋଟାରେ ନିଶୂନ
ଗାଢ ଚୁପ୍‌ଚାପ୍ ହେଲେ
ଏଠିବି ଏମାନ୍ତି କେତେ ଭଲ ପାଏ ମଣିଷକୁ ଅଗଣିତ କାମନାର କେତେ
ଆଶା ନିରାଶା ଭିତରେ ।
ମୋ ଦେହର କାମ୍ୟ କେତେ ପ୍ରେମ୍ଭ ମୋର ଏ ମନର ମୋ ଆତ୍ମାର
କେତେ ଯେ ପିପାସା
ଏହି ଘାସ କାକର ଓ ଏହି ଧାନ ମହକରେ, ଡାହୁକର ଏ ଡାକରେ ହୁଏତ
ବା ରହିଚ ନିହିତ
ତେଣୁ ଯେବେ ସନ୍ଧ୍ୟା ବେଳେ ଆଲୁଅ ନରମ ହୁଏ ଗ୍ଲାଇ ଜମେ ଶୁଖିଲା
ଛଣରେ
ମୋର କ୍ଳାନ୍ତ ସତ୍ତ୍ୱା ଘେରି ସମସ୍ତ ହଠାତ୍ ଆସେ ଅଜ୍ଞାତ ଏ ଅନ୍ଧାରର ପ୍ରଶ୍ନ
ଆଉ ବହୁତ ସନ୍ଦେହ ।

( ଦୁଇ )

ଧାନ ସିଢି ନଈ ସିନା ଏଠି ନାହିଁ ଏଠି ଏହି ସିଢୁଆର ଧାର
ତାରା କେତେ ଜ୍ୱଳେ ଆଉ ମେଘ ଜ୍ୱଳେ ମୋ ଆଖିର ଦିଗ୍‌ବଳୟ ଘେରି
ମୋର କ୍ଷୁଦ୍ର ଚେତନାର ଦିଗନ୍ତ ସେପାଖେ ଏହି ପୃଥିବୀର ଗ୍ରହ ଚନ୍ଦ ଧରି
ଧାନର ମହକ ଯେବେ ଫେରିବ ବା କୁହୁଡ଼ିରେ ଠିକ୍ ଆଜି ପରି—

ସେଦିନ ଯଦି ମୁଁ ଫେରେ ଛୁଇଁ ଛୁଇଁ ଆମ୍ବଗଛ ବଉଳର କଷି ଆଉ କଢ଼ !—
ସେଦିନ ମୋ ଫେରିବାର ସାର୍ଥକତା କେଉଁଠିବା ? ନିଚ୍ଛଟିଆ ଏ ନଇରୂଠରେ
ନିଚ୍ଛଟିଆ ବାଲିଚର ବେଣା ଘାସ ଦେହରେ ବା ନିରର୍ଥକ ମୋର ଏହି
ଆତ୍ମାର ଅତୀତ

ସେଦିନ ମୁଁ ଯଦି ଫେରେ—ସାର୍ଥକତା କେଉଁଠି ବା
ଶାନ୍ତ କାହିଁ ମୋର ଏହି ଭଲ ପାଇବାରେ ?
ମୋର ଭଲ ପାଇବାରେ ଏ ବାଟର ବିବର୍ଣ୍ଣତା ଆଉ ଏହି ପାଦଚିହ୍ନ ସବୁ
ଖାଲି ପାଦ ଚିହ୍ନ କେତେ ଯୋତା ଓ ଖଡ଼ମ୍ ଦାଗ ସାଇକେଲ୍ ଚକ ଦାଗ କେତେ
ଫ୍ଲେଟ, ଉଞ୍ଚ, ଗୋଲ୍ ଗୋଲ୍ ମୋଟ ସୋଟ ଯେତେ ସବୁ
ଏ ବାଟରେ ଚଲେ ଆର ନିଶମୋଡ଼ି କ୍ୟାନଭସ୍ ଯୋତା ଦାଗ ରଖି
ଟାଟା ଆଉ କଲିକତା ଗଡ଼ଜାତ ବୃକଣ୍ଟ—ତାପରେ......
ସ୍ମୃତିର କାରୁଣ୍ୟ ଭରି ଏ ବାଟର ବ୍ୟର୍ଥତା ଓ ନିରର୍ଥକ ନିଶବ୍ଦ ବେଦନା !
ଆଜି ଯେବେ ଘଞ୍ଚ ଜମେ ସେ ପାରିର ଅତଡ଼ାରେ—ଏପାରିର ଧାନଗଛ
କଇଁ ପାଖୁଡ଼ାରେ
ଆଲୁଅ ନରମ ହୁଏ ହଳଦୀପାଣିରେ ଗୋଲି ଚଷର କଣ୍ଢ ଓ ଘାସ ଶଙ୍ଖଚାଲ ଡେଣା
ଏହି ଘଞ୍ଚ ଅନ୍ଧାରରୁ ସମସ୍ତର ସେପାଖରୁ ସେମାନେ ଆସିବେ କଣ ଫେରି
ଏହି ଧାନ ମହକରେ

ପରିତ୍ୟକ୍ତ ଯେତେ ଆଶା କାମନାର ପଛେ ପଛେ
ଏହି ଭଲ ପାଇବା ଓ ଏ ଗାଆଁର ନିଶବ୍ଦ ଦେହକୁ ?
ଏ ନିଶବ୍ଦ ଏ ବେଦନାର ସ୍ତିମିତ ଏ ଆଚ୍ଛନ୍ନତା...ସମସ୍ତର ସ୍ଥଗିତ ମୁହୂର୍ତ୍ତି
ଅତୀତର ସ୍ମୃତି ସବୁ ସେମାନେ ଏ ଦିନାନ୍ତର ସୀମାର ସେପାଖେ
ଆଜି କଣ ଛୁଡ଼ାହୋଇ ଏ ପାଖର ଏହିବାଲି, ସିଡ଼ିଆର ଶୀର୍ଣ୍ଣ ଏହି
ଦେହର ସୀମାରେ

ସେମାନେ ଶୁଣନ୍ତି କଣ ଜୀବନର ପ୍ରତିଧ୍ୱନି ?
ଏଠି ଏତେ ହାରଜିତ୍ କଟିସି ଓ ଟାଉଟର, ହିସ ଲୁହ ଈର୍ଷା ଭସ୍ମ
ଏହି ଭଲ ପାଇବାର କମିକ ଏ ଷଣ୍ଢ ଆଉ ମୃତ୍ୟୁର ଏ ନିଶବ୍ଦ ସଙ୍ଗ୍ରାମ
ଗଡ଼ଜାତ କଲିକତା ଟାଟା ଆଉ ସରକାରୀ ବୃକଣ୍ଟ...ତାପରେ....
ଜୀବନର କ୍ଲାନ୍ତ ବାଟ ମାଇଲ୍ ମାଇଲ୍ କେତେ ଚଢ଼ାଣି ଉଠାଣି—

କୋଣ କୋଣ କେତେ ସ୍ନେହ କେତେ ଦ୍ୱେଷ ଅନ୍ଧକାର କେତେ ଭସ୍ମ ଆଶା ଓ
ବ୍ୟର୍ଥତା

ପାର ହୋଇ ସନ୍ଧ୍ୟାବେଳେ ସେମାନେ ଫେରିଲା ଦିନ
ମଶାଣିର ଏହି ନାଲି ପଲାଶ ଫୁଲରେ
ସେମାନେ ହଠାତ୍ କଣ ଦେଖି ନାଲି ପ୍ରଜାପତି ଅକସ୍ମାତ୍ ଛୁଡ଼ା ହୋଇ
କେତୋଟି ମୁହୂର୍ତ୍ତ
ଭାବିଥିଲେ ଫେରିବାକୁ ଏହି ଧାନ ମହକରେ ହଳଦି ବସନ୍ତ ଆଉ ସିଝୁଆର
କୁହୁକ ସହିତ ?

ଏହି ଭଲପାଇବାର ନିଃସଙ୍ଗ ବେଦନା ନେଇଁ ପଉଷର ଧୂସର ଦେହରେ
ଆଜି ଆମ୍ବ ବଉଳରେ ପବନ ଯଦିବା ଛୁଏଁ ଦୂର ନଈ ଅଡଡ଼ା ଉପରେ
ଝିଣ୍ଟିକା ଯଦିବା ଡ଼ାକେ ଆଉ କେଉଁ ଅଶାନ୍ତା ପକ୍ଷୀର
ନିଃସଙ୍ଗ ଡାକରେ ମିଶେ ପାଟି ଶୋକ ନ୍ୟାସ୍ତ ନିଶାପର
ଆଜି ଯେତେ ପଉଷର ନିସ୍ତବ୍ଧ ଦେହରେ ଯାଏ କ୍ଷୟ ହୋଇ ଏ ଗାଆଁର ଦେହ
ମୁଁ ଫେରି ପଛକୁ ଗ୍ରହେଁ
କେତେ ଖବ୍ କାକର ଭିତରେ
କ୍ଷୟ ହୋଇ ଯାଇଥିବା କେତେ ଭଲ ପାଇବାର ହିସାବ ନିକାଶ କେତେ
ସତ୍ତ୍ୱ କେତେ ନିଶବ୍ଦ ସମସ୍ତ ।

( ତିନି )

ଧାନ ସିଝି ନଈ ପିନା ଏଠି ନାହିଁ···ଏଠି ଶୀର୍ଣ୍ଣ ସିଝୁଆର ସୁଅ
ଏଠି ଭୋର ପବନରେ ଝଡ଼ିଯାଏ ଜୀର୍ଣ୍ଣ ପତ୍ର କେତେ
ଧାନ ସିଝ ନଇପାଖେ କେଉଁ ଗୁଇ ଗଛ ଅଛୁଆଲେ
ବିଦେଶୀ କବିର ଆତ୍ମା ଆଜି ପୁଣି ଫେରୁଥିବ ହୁଏତ ଏ ଧାନ ମହକରେ
ପରିତ୍ୟକ୍ତ କାମନାର ଦେହ ଖୋଜି···ଏହି ଭଲ ପାଇବାର ଦେହ ।

ଏହି ଭଲ ପାଇବାର ଦେହ ଧରି ଏ ପୃଥିବୀ ହୁଏତ ବା ଏତେ ରୂପକଥା
ହଳଦୀ ଓ ଅଳତାର ଦାଗ ଗୋଳି ଆକାଶରେ ଫାଲ୍‌ଗୁନର ଦିନ ଯେବେ ଫେରେ
ପଉଷର କୁହୁଡ଼ିରେ ଘୋଡ଼ିହୋଇ ଆମ୍ବତୋଟା ଚୁପ୍‌ଚାପ୍ ନିଗ୍ରୁଟିଆ ଜାମୁକୋଳିବଣ
ଦିପହର ଖର ପୁଣି ଜାଳିଦିଏ ଜ୍ୟେଷ୍ଠମାସ ବାଲି, ବାଟ, ନିଗ୍ରୁଟିଆ ଚର
ଯେତେବେଳେ ମଣିଷର ରକ୍ତରେ ଜୀବନ୍ତ ହୁଏ ହଠାତ୍ ଅଜାଡ଼ େତାର
ପୁଞ୍ଜିଭୂତ କାମନାର ଯୁଗଯୁଗ ମୃତ କେତେ ଏ ଗାଆଁର ପୁରୁଷ ପ୍ରକୃତି

ମୁଁ ତେଣୁ ପଛକୁ ଯେବେ ଫେରି ଚାହେଁ ମୋ ସତ୍ତାର ବ୍ୟଥା ଓ କ୍ଲାନ୍ତିରେ
ମୋର ସବୁ କାମନାର ନୀରବର ପ୍ରେତାତ୍ମା ଯେବେ ପାଲଟେ ଏ ଧୂସର ପଞ୍ଜର
ହୁଏତ ଏ ପୃଥିବୀକୁ ଭଲପାଏ ଦେହ ମୋର ସ୍ମୃତିର ଏ ବେଦନା ଭିତରେ
ତଥାପି ମୋ ଚାରିପାଖେ ସମସ୍ତର ହାହାକାର ମୃତ୍ୟୁର ଏ ଚରମ ଶୂନ୍ୟତା
ଶୂନ୍ୟ ଏହି ବେଦନାର ବିବର୍ଣ୍ଣ ଏ ଗୋଧୂଳିରେ, ଏ ପୃଥିବୀ ଏ ମ୍ଳାନ ଆକାଶ
ଆଉ ମୋର ସାମ୍ନାରେ ଏହିବାଟ ଦୁପାଖର ଏହି ଧଳା କ୍ଷୀରକୋଳି ଫୁଲ
ସ୍ମୃତିର ବେଦନା ଅବା ଅତୀତର ଆତ୍ମାରେ ବା ରାତି ଆଉ ଆସନ୍ନ ମୃତ୍ୟୁରେ
ପାଏ ପୁଣି ଅର୍ଥନ୍ୟାସ ଆକାଶ ଓ ଏ ପୃଥିବୀ
ଏହି ମୋର ଦେହ ତଳେ ଏହି ଝଡ଼ା ପତ୍ର ଆଉ
ଏହିବାଟ ଦୁପାଟର କଣ୍ଟା ଆଉ କ୍ଷୀରକୋଳି ଫୁଲ



# କେଉଁ ଘାସ ?   କେଉଁ ବାଲିଚର ?

କେଉଁ ନଈ କେଉଁ ବଣ ?   କେଉଁ ଦୂର ଦିଗନ୍ତର ଦେହ ?
କେଉଁ ନଈ ମୁହାଣରେ ଉଜାଣି ଜୁଆର ସୁଅ ।  କେଉଁ ଘାସ କେଉଁ ବାଲିଚର ?
କେଉଁ ଘାଟ ପହରର ଉଜାଣି ନଦୀର ଢେଉ ?  କେଉଁ ତାରା ଗାଢର କାକର ?
ଫେରିଆସେ ଫେରିଆସେ ମୋ ମୃତ୍ୟୁର ଭସ୍ମ ଡେଇଁ
କେଉଁ ଦୂର ଦିଗନ୍ତର ଗଛ ଆଉ କଇଁ ଫୁଲ ?
ଧଳା ଉଲ୍ ଦେହ ଆଉ ପଲାଶ କଢ଼ର କ୍ଷତ
କେଉଁ ଫିକା ଓଠ ତଳେ, ସମୁଦ୍ରର ଢେଉ ଆଉ
ଚମ୍ପାଫୁଲ ମହକରେ ବସନ୍ତର ବ୍ୟଥିତ ଆକାଶ ।

ଏହି ଭଲପାଇବାରେ ମୃତ୍ୟୁ ଯଦି ପୁଣି ଆସେ
ତେବେ ଏହି ପୃଥିବୀର ବିପର୍ଣ୍ଣ ଏ ସୀମାନ୍ତରେ ମୋ ଆଖିର ତାରା
କକ୍ଷଚ୍ୟୁତ ହେଲବେଳେ ହୁଏତ ବା ଶେଷ ତାର କାକର ଟୋପାରେ
ଭିଜାଇ ନିଶବ୍ଦେ ଦେବ ଉଜାଣି ନଦୀର ଢେଉ
ଧଳା ଉଲ୍ ଗ୍ଲୁଟ ଆଉ······
କେଉଁ ନଈ ?   କେଉଁ ଫୁଲ ?
କେଉଁ ନଈ ମୁହାଣରେ ଉଜାଣି ଲହର ଢେଉ ?
କେଉଁ ନଷ୍ଟ ଦିଗନ୍ତର ବସନ୍ତ ଓ ବ୍ୟଥିତ ଆକାଶ ?



# ବାବା ପାଇଁ ଦୁଇଟି କବିତା

( ଏକ )

ଏ ଶୀତରେ ଏ କୁହୁଡ଼ି ଭୋର ବୁଢ଼ୀ ମାଆ ପରି
ତା ଅଖିର ଫିକା ପେଜ, ତା ମୁଣ୍ଡର ଧଳା ଝୋଟ ପରି
ଆଉ ତାର ଜହ୍ନାଣିର ଝାପ୍‌ସା ଆକାଶ ସବୁ
ମରିଥିବା ପୃଥିବୀର ସ୍ମୃତିର ଯନ୍ତ୍ରଣା ନେଇ
ପାହାଡ଼ରେ ଏ ଶୀତରେ ଛଉ ଛଉ ଧଳା ଦାଗ ପରି ।

ସେ ଆସେ ଯେମିତି ଠିକ୍ ଧଳା ଶାଲ୍ ଘୋଡ଼ି ହୋଇ
ବାଡ଼ି ଧରି ନଇଁ ନଇଁ
ତା ପଛରେ କେତେ ନଈ, କେତେ ଢେଉ, କେତେ ସୁଅ,
କେତେ ବାଟ ଅପନ୍ତରା ଶୋଷ ଆଉ କେତେ ଥକା ମୁହଁ
ତା ଧଳା ଚଦରର ତଳେ ଶୁଖିଥିବା କ୍ଷୀର କେତେ
ଥଣ୍ଡା ହୋଇ ଯାଇଥିବା ଉଷୁମର କେତେ ନାହିଁ—
କେତେ ଯେ ସେ ଅଜସ୍ର ସମସ୍ତ

ତୋ ଆଖିର ଏନ୍ଦ୍ର ଜାଲ
ମୋ ଅଖି ତାହାରୁ ନିଏ ଛଡ଼େଇ ଖେଳଣା କେତେ
କେତେ ଭଙ୍ଗା କଣ୍ଢେଇର ହାତଗୋଡ଼ ଭଙ୍ଗାଚକ
କେତେ ସ୍ପ୍ରିଙ୍ଗ୍ ଫେଁକାଳି, ପୁଣି କେତେ ରଙ୍ଗର ଆଲୁଅ.....
ତୋ ବୁଢ଼ୀ ମାଆର ଆଖିତଳାରୁ ବି ଆଖି ମୋର

ଏମିତ ଛତ୍ରେଇ ଦନେ ଆଣିଥିଲ କେତେ ଗପ, କେତେ ଗୀତ
କେତେ ଯେ ଆକାଶ ତେଇଁ କେତେ ଘୁଡ଼ି ବେଲୁନରେ
କେତେ ଲୁହ, କେତେ ଡର, କେତେ ବୁଢ଼ୀ ଅସୁରୁଣୀ ମୁହଁ ।

ମୋ ବୋଉର ଆଖି ପର ତୋ ଆଖିର ଏ ଆକାଶ
ତୋ ଆଖିର କଳା ଛେଉ କଳାମେଘ ନେଳି ପ୍ରଜାପତ
ଖଣ୍ଡ ମେଘ ବସନ୍ତର ମହୁ ସବୁ ପିଇ ପିଇ
ପାର ହୋଇ ପାଠ ପଢ଼ା, ହକି ଆଉ ଫୁଟ୍‌ବଲ୍
ପ୍ରେମ ଆଉ ଚିଠି ଲେଖା, ରୋଗ ଆଉ ଦାରିଦ୍ର୍ୟର ସବୁ କ୍ଷତ୍ବକ୍ଷତ
ତୋ ଆଖି ଆକାଶ ଯାଉ ମୋ ବୋଉ ଆକାଶ ପର
ପାର ହୋଇ ମହାକାଶ, ମହାକାଲ, ସେ ମୃତ୍ୟୁର ଦୁନବାର ଗତ

ଏ ଶୀତର ଏ କୁହୁଡ଼ି ଦାଢ଼ି ଧରି ନଇଁ ନଇଁ
ପାହାଡ଼ ଉଠାଣି ଚଢ଼େ
ତା ଧଳା ଗୁଦର ତଳେ କେତେ ଗଛ, କଣ୍ଟା କେତେ
କେତେ ବଣ ଜଙ୍ଗଲର ଫୁଲ
ଶିକାରି ବାଘର ନଖ, କାଇଁର ଡେଣା କେତେ.........
ତା ଧଳା ଗୁଦର ତଳେ ପାଚିଲା ଧାନର ବାସ୍ନା
ଝିଙ୍କାରିର ଝିଁ ଝିଁ
ବାଦୁଡ଼ି ଡେଣାର ଗୁଞ୍ଜ
ଚକ୍ ଚକ୍ ତାରା କେତେ, ତା ହାତର ଝଣ୍ଟିଥିବା କାଚଗୁଣ୍ଡ ପରି ।

ଏ ଶୀତର ଏ କୁହୁଡ଼ି ପାହାଡ଼ ଉଠାଣି ଚଢ଼ି ଗ୍ଲଳିବ
ତୋ ଆଖିର ଆକାଶ ସେପାରି
ମୋ ଆଖିର ମେଘ ତେଇଁ ତୋର ବୁଢ଼ୀ ମାଆ ଯାଏ ତୋ ଆଖି ତାରାରୁ ଖସି ।
ଆଦାଗନ୍ତ, ଆସମୁଦ୍ର ଆଜନ୍ମର ସମସ୍ତ ସେପାରି ।

# ବାବା ପାଇ ଦୁଇଟି କବିତା

( ଦୁଇ )

ଆଜିଠାରୁ ତା ବାଟରେ ଫୁଲ ପଡୁ, ଖଇ ପଡୁ
ଚନ୍ଦନ ଓ ଝୁଣାର ବାସ୍ନାରେ
ତା ବାଟରେ ମୁହିଁ ସବୁ ହୋଇ ଯାଉ ନିସ୍ତବ୍ଧ, ନୀରବ ।
ପଛରେ ତ ବାଟ ତାର କର୍ଦ୍ଦମାକ୍ତ ଆବର୍ଜନାମୟ
ତା ପାଦର ଚିହ୍ନ ସେଠି ନାହିଁ ମୋଟେ ଆଜି ଆଉ ନାହିଁ ।

ତା ଯିବାର ମୁହୂର୍ତ୍ତରେ ବର୍ଷା ଆଉ ଅପରିଚ୍ଛନ୍ନତା ।
ଚୁପ୍ ଚାପ୍ ତା ମୁହଁର ବିକୃତର ନିଃସଙ୍ଗତା ନେଇ
ଆଖି ବୁଜି ତା ଦୃଷ୍ଟିରେ ସେ ବା କଣ ଦେଖୁଥିଲା ?
ଅସ୍ପଷ୍ଟ ନିଷ୍ପ୍ରଭ ବନ୍ଧୁ ମୁହଁର ବିକୃତ ଅବା ?
କ୍ଳାନ୍ତ କ୍ଳାନ୍ତ କ୍ଳାନ୍ତ ଖାଲି—ବିରକ୍ତ ବା ପରିସମାପ୍ତିର ?
ଅବା ମୋ ଜେଜେର ମୁହଁ କଳା ଧଳା ବାଙ୍କ ଦାଣ
ଅତର ଓ ଚୂର୍ଣ୍ଣ ପାନ, ବଙ୍କା ବାଡ଼ି ରୁପା ପାନ ଡବାର ସଉକ ?

ଅବା ତା ଦୃଷ୍ଟିରେ ଥିଲା ଦିଗନ୍ତ ଦିଗନ୍ତ ଖାଲି ?
ଅନନ୍ତ ଶୂନ୍ୟତା ଘେରି ହାହାକାର ?
ଅବା ମହା ଶୁପ୍ତିର ବିସ୍ତାର ?
ତୋ ଆଖିର ଡୋଳା ତଳେ ତା ମୁହଁର ଚମ ଆଉ ହାଡ଼
ତୋ ହସର ପାନ ବୋଲ, ତା ବାଳର ଧଳା ଝୋଟ ସବୁ
କେବେହେଲେ ପାଇନାହିଁ ଜୀବନ୍ୟାସ

॥ କବିତା ସମସ୍ତ-୭୯ ॥

ତେଣୁ ତୋର ଅସ୍ପଷ୍ଟ ସ୍ମୃତିରେ
ସାମ୍ନାରେ ସମସ୍ତ କେବେ ବ୍ୟତିବ୍ୟସ୍ତ ହେବ ନାହିଁ ।
ସହରର କାକର ଅବା ଜିଦ୍‌ଖୋର ତୋ ଲୁହ ଭିତରେ
ସେ ବୁଢ଼ୀର ଚମ ହାଡ଼ ଶୀତ ଆଉ କୁହୁଡ଼ି ସ୍ମୃତିରେ
କେବେ ତ ଫେରିବ ନାହିଁ ତୋ ଫେରିବା ବାଟର କ୍ଲାନ୍ତିରେ ।

ତା ଆଖିର କୁହୁଡ଼ିର ତୃପ୍ତି ଅଶ୍ରୁ ତୋର ମନ ଘେରି
ତା ହସର ସ୍ନେହ ଆସୁ ତୋ ଦେହରେ ତାର ସବୁ ଆଶୀର୍ବାଦ ନେଇ ।
ସେ ଆଜ ଗଲାଣି ଫେରି କାଠଯୋଡ଼ି ବାଲି ଭିତରକୁ
ସେ ଆଜି ଗଲାଣି ଫେରି ସମସ୍ତଙ୍କୁ ଏକ ମହା ପରିସମାପ୍ତିକୁ ।

ତା ବାଟରେ ଫୁଲ ପଡୁ ବର୍ଷା ହେଉ ଚନ୍ଦନ ଓ ଝୁଣା
ଅସ୍ପଷ୍ଟ ନକ୍ଷତ୍ର ଯେତେ ମୁହଁ ସବୁ ବିରକ୍ତିର
ଲୋପ ପାଉ ଶୂନ୍ୟ ଆକାଶରେ
ଯାଯାବର ତା ଆତ୍ମାର ଗତି ହେଉ ତୋର ଗୀତ ପରି
ଅର୍ଥହୀନ ଉଚ୍ଛ୍ୱାସର ସାନ ସାନ ଅସରନ୍ତି ଢେଉ ।



# ମୃତ୍ୟୁ

(କବି ଗଙ୍ଗାଧର ମେହେରଙ୍କୁ)

"ମୁଁ ତ ଅମୃତ ସାଗର ବିନ୍ଦୁ
କଭେ ଉଠିଥିଲି ତେଜ ସିନ୍ଧୁ ।
.......................
ପଥେ ଶୁଖିଗଲେ ପାପତାପରେ,
ହୋଇ ଶିଶିର ଖସିବି ତାପରେ ।"

ମହାଶୟ !
କୌତୁହଳ ଠିକ୍ ନୁହେଁ......
ଏ ଦେହ ଓ ଦେହାନ୍ତର ସୀମା ଅବା
ଚେତନାର ପାଚେରି ସେପାଖେ
ସ୍କ୍ରେଟ ସ୍କୁଲ ପିଲପରି ଫାଟକ ସେପାଖ ଡେଇଁ
ଦେଖିବାର କୌତୁହଳ ନୁହେଁ ।

ଯେଣୁ ମୁଁ ଜାଣିଚି ଠିକ୍ ଫେରିବାର ବାଟ ଏଠି ନାହିଁ
ଫେରିବାର ଏ ବାଟରେ ଅନ୍ଧାର କେବଳ ଫେରେ
ଯେହେତୁ ମୁଁ ଠିକ୍ ଜାଣେ ଫେରିବାର ଏ ବାଟରେ ଗ୍ଲାନି ଅବା
ସ୍ମୃତି ଫେରେ ନାହିଁ
ଯେହେତୁ ମୁଁ ଠିକ୍ ଜାଣେ ଗ୍ଲାନିର ଦେହାନ୍ତ ନାହିଁ
ସମସ୍ତର ଗ୍ଲାନ୍ୟାପାତ ନାହିଁ ।

ମହାଶୟ
ସେ ମୁହୂର୍ତ୍ତରେ ଶୋଭା ପାଉଥିଲା ସେଦିନ ବର୍ଷାର
ଲହରେ ଶିଥିଳ ସିକ୍ତ ଶାଳବଣ
କାଉ ଓ କଜଳପାତି ପରସବୁ ଆକାଶରୁ ଲୁହା ଲୁହା ଅସରା ଅସରା
ଆପଣଙ୍କ ଗ୍ଲୁଲ ଘାଣ
ବନ୍ଦୀ ହୋଇ ପଡ଼ୁଥିଲା ସେଦିନ ସନ୍ଧ୍ୟାରେ
ଆପଣଙ୍କ ଦେହ ଆଉ ଦେହାନ୍ତର ସୀମାନ୍ତ ଉପରେ
ସେଦିନ ସୁନ୍ଦର ସେହି ଶାଳ ବଣ ଧାନ କ୍ଷେତ
ଆଷାଢ଼ର ସେ ପୃଥିବୀ
ଜୀବନରୁ ମୃତ୍ୟୁ ପାଇଁ ସମସ୍ତର ବନ୍ଦର୍ଗ୍ଧ ସଙ୍ଗୀତ ।

ସେ ମୁହୂର୍ତ୍ତର ଶୋଭାଠାରୁ ବହୁ ଦୂର
ଏ ପୃଥିବୀ ଧୂସର ପାଣ୍ଡୁର······
ଅକସ୍ମାତ ଆକାଶର ମହା ଶୂନ୍ୟତାରେ
ପ୍ରାଚୀନ ସୂର୍ଯ୍ୟର ଘୂର୍ଣ୍ଣିବାତ୍ୟାରୁ ଏ ଚୂର୍ଣ୍ଣ ଶିବା······
ତା ପରେ ଦଶାବତାର ନାଚର ରୋମାନ୍ସ ଧରି
ପାହାଡ଼ ଜଙ୍ଗଲ ମେଘ ଝରଣା ଓ ଏ ସହର
ପାଖୁଡ଼ା ପାଖୁଡ଼ା ଏହି ଝଡ଼ିଗିବା ଗୋଲାପ ଫୁଲର······
ବିଷଣ୍ଣ ମୁହୂର୍ତ୍ତର ମ୍ଳାନ ସ୍ୱପ୍ନ ନେଇ
ଆକାଶର ଦେହରେ ଦେହରେ
ଏହି ତାରା ଗ୍ରହ୍ମାପଥ ମ୍ୟାଜିକ୍ ଲଭ୍ଭପାଇ
ଗ୍ରହର ଦେହାନ୍ତ ପରେ ସମସ୍ତର ବାଟରେ ଫେରିବା······
କିନ୍ତୁ ମହାଶୟ
ଗ୍ରହର ଦେହାନ୍ତ ନାହିଁ, ସମସ୍ତର ଗ୍ରହ୍ମାପାତ ନାହିଁ ।

ମହାଶୟ, ଆଜ ତେଣୁ ଏ ମୁହୂର୍ତ୍ତରେ କୌତୂହଳ ନାହିଁ
ଆଶା ନାହିଁ ଇପ୍ସା ନାହିଁ—ପୁଣି ଏଠି ଫେରି ଆସି

ଏ  ଷ୍ଟୋର ବାଇଲଇନ୍ କାର୍ ବସ୍ ଷ୍ଟଟର ଭିତରେ
ଙ୍କା  ପଞ୍ଚ ଗୀତ ଶ୍ୱାଭ ବନ୍ଧୁକ ଦେହର, ବନ୍ଧୁ ଛନ୍ଦନରେ
ମିଶିଯିବା ନାହିଁ ।

ଏ ମୁଖ କେବଳ ଟିକ୍ ହଦ୍ଦରର ଫରୁ ଫ୍ୟୁକ୍ ଅକସ୍ମାତ୍ ପୋଢ଼ିଗଲ ପରି'
ଏ ମୁଖ ବା କାହାପାଇଁ ବ୍ୟକଣଙ୍କୁ ଅକସ୍ମାତ୍ ଛୁଟି ନେଲା ପରି ।

ମହାଶୟ
ମୁଁ ଯଦ ପାଉଣ୍ଡ ରଖି ଆପଣଙ୍କ 'ଅମୃତ' ଓ 'ଶିଶିର'ର ଆଶା ।



## ବଣନ ମହାନ୍ତି

ମହାପ୍ରଭୁ
ମୋର ଭଙ୍ଗା ମୃଦଙ୍ଗର ନଷ୍ଟଗର୍ଭ ନଷ୍ଟ ତାଳ ଲୟ
ଆପଣଙ୍କ ଅର୍ଦ୍ଧ ଦଗ୍ଧ ନଷ୍ଟଦାରୁ ନଷ୍ଟ ଦେହ ପରି
ଗଙ୍ଗାର ଗର୍ଜନ ସହ ହାହାକାର ଶୂନ୍ୟତା ଭିତରେ
ପରିତ୍ୟକ୍ତ ଅସହାୟ ଚିତ୍କାର ଓ କାଶବଣ ଗଗନ ସହିତ

ଆପଣ ପାରିଲେ ନାହିଁ ନିଜକୁ ତ ରକ୍ଷାକରି ସେଦିନ ଯୁଦ୍ଧରେ
କେତେ ହତ୍ୟା, ରକ୍ତପାତ, ବିଧ୍ୱସ୍ତ, ମନ୍ଦିର ଗ୍ରାମ, ବକଲାଙ୍ଗ, ବିଧ୍ୱସ୍ତ ବସ୍ତିହ
କଣ୍ଟା ଝାଡ଼ ଜଙ୍ଗଲରେ, ଗଡ଼ଖାଇ, ନଈ ପଠାରରେ
ଆପଣଙ୍କ ଦେହରକ୍ଷୀ ରାଜା ପ୍ରଜା ସୈନ୍ୟ ସେନାପତି
ସେମାନଙ୍କ ମୁର୍ଦ୍ଧାରର ସତ୍କାର ଓ ଶେଷ କୃତ୍ୟ ପାଇଁ
ଆଜି କେହି ସାହା ନାହିଁ । ଆପଣଙ୍କ ଅର୍ଦ୍ଧଦଗ୍ଧ ନଷ୍ଟ ଦାରୁ ପରି
ସେମାନେ ବି ପରିତ୍ୟକ୍ତ ଅସହାୟ ଆପଣଙ୍କ ହତଶ୍ରୀ ରାଜ୍ୟରେ

ଆପଣ ଫେରିବେ କଣ ଶ୍ରୀକ୍ଷେତ୍ରକୁ ପୁଣିଥରେ ?......ଅନ୍ୟଦାରୁ
ଧୂପ ଝୁଣା ଚନ୍ଦନର ସୁଗନ୍ଧରେ ଅନ୍ୟ ରଙ୍ଗ ଅନ୍ୟ ଚିତାଙ୍କନ ?
ଆପଣ ତ ଫେରିଥିଲେ ତ୍ରେତୟା ଓ ଦ୍ୱାପରରେ ; ପୁଣି ଏକ
ଅରଣ୍ୟ ରାଜ୍ୟରେ
ନନ୍ଦିତ ରାଣୀର ଗର୍ଭ ଭିତରକୁ ଆଲୋକିତ ଶ୍ୱେତ ହସ୍ତୀ ହୋଇ ।

ଆଜିର ଏ ସୂଚୀଭେଦ୍ୟ ଅନ୍ଧାରର ଉଚ୍ଛିଷ୍ଟ ଭିତରେ
ଆପଣ ଫେରିବେ ପୁଣି ଅନ୍ୟ କେଉଁ ଆକାରରେ
ମୋର ଭଙ୍ଗା ମୃଦଙ୍ଗର ଅନ୍ଧାର ଗର୍ଭରୁ ?

ମହାପ୍ରଭୁ
ବହୁତ ଯୁଗର ବନ୍ଧ୍ୟ ବିଶ୍ୱାସର ମୃତ୍ୟୁ ପରେ ଆଜିର ମୃତ୍ୟୁରୁ
ଆପଣଙ୍କ ବିଶ୍ୱାସକୁ ଜୀବନ୍ୟାସ ଦେବା ପାଇଁ
ମୋର ଅବା ଶକ୍ତି କାହିଁ ?
ଗଙ୍ଗାର ନିର୍ଜନ ଘାଟ ମଶାଣିର ଅନ୍ଧାରରେ କାଉବଣ ଝିଙ୍କାରି ଶବ୍ଦରେ
ଛାରଖାର ମୋ ହୃଦୟର ଦୁର୍ଦ୍ଦିନର ଅନ୍ତ ଅବା କାହିଁ ?

ଆପଣ ଫେରିବେ କଣ ପୁଣି ନୂଆ କଳେବର ଧରି
ଆପଣଙ୍କ ରୂପ କଣ ଭୟଙ୍କର ଏ ନବ ଗୁଞ୍ଜରୀ
ଉନ୍ମତ୍ତ ହାତୀର ଜଙ୍ଘ, ସିଂହ ଆଉ ମାର୍ଜାରର ଦେହ
କେଶର ବେଷ୍ଟିତ ମୁହଁ ଭୟଙ୍କର ମର୍କଟର
ସେ ଏଠୁ ବଢ଼ାଏ ଜଙ୍ଘ ଧୀରେ ଧୀରେ ଆଗକୁ ସାମ୍ନାକୁ

ଏ ଜନ୍ମର ଯାତ୍ରା ପ୍ରଭୁ ଭୟାବହ କେଉଁ ମୃତ୍ୟୁ
ଭୟାବହ କେଉଁ ପାପ ମହା ନିର୍ବାଣକୁ ?
ବିଶ୍ୱାବସୁ ଶବରର ଘଞ୍ଚ ବଣ ଅନ୍ଧାର ଗୁମ୍ଫାରୁ
ଏତେ ଯୁଗ ଏତେ କ୍ଲାନ୍ତ ପଥଶ୍ରମ ପରେ
ମହାପ୍ରଭୁ
ପୁଣି ଏ ପୁନରାବୃତ୍ତି ପୃଥ୍ୱୀରେ କେଉଁ ଅଧ୍ୟାୟର ?



॥ କବିତା ସମାପ୍ତ ॥

## ସଞ୍ଜୟ ଓ ଧୃତରାଷ୍ଟ୍ର ସମ୍ବାଦ ୨

"ମହାଶୟ
ଆପଣଙ୍କ ଶିକ୍ଷା ଅତି ଚମତ୍କାର
ଆପଣଙ୍କ ବକ୍ତୃତାର ଅକାଟ୍ୟ ଯୁକ୍ତିରେ
ମୋ ଦୃଷ୍ଟିରୁ ଧ୍ୱଂସ କରି ମୋହରୂପୀ ଅନ୍ଧାରର ଘୋର 'ପ୍ରହେଳିକା
ଆପଣ ଏ ଯେଉଁ ଶିକ୍ଷା ଦେଲେ ମତେ ମହା ଜ୍ଞାନାଲୋକ
ତାର ତୀବ୍ର ଦହନରେ ହାତମୁଠା ଟାଣ ମୋର ହୋଇ ଆସେ ବଜ୍ର ପରି
ମୋ ହୃଦୟ ଲୌହ ପିଣ୍ଡ ପରି
ମୋ ଧନୁର ତୀର ହୁଏ ତୀକ୍ଷ୍ଣରୁ ଆହୁରି ତୀକ୍ଷ୍ଣ
ମହାଶୟ!
ବର୍ତ୍ତମାନ ମୁଁ ପ୍ରସ୍ତୁତ, ବନ୍ଧୁଜ୍ଞାତି ନରହତ୍ୟା ଧର୍ମ କ୍ଷତ୍ରିୟର
ଅନନ୍ତ ମୁକ୍ତିର ଦ୍ୱାର ଭେଦ କରି ଦିବା ପାଇଁ
ଏ ତ ମହା ଯୋଗର ସାଧନା ।

ଯେହେତୁ ଆପଣ ମତେ ଶିକ୍ଷା ଦେଲେ
ମୋ ତୀରର ତୀକ୍ଷ୍ଣ ମୁନ ଭିତରେ ଆପଣ
ମୋ ଧନୁର ହୁଁଙ୍କାରରେ ଆପଣଙ୍କ ଶଙ୍ଖ ଧ୍ୱନି
ଆପଣ କି ବିକଳାଙ୍ଗ ଆହତ ସୈନିକ
ମୋ ହୃଦୟ ଅସୀଘାତ ଖୁଣ ଓ ରକ୍ତରେ
ଆପଣ କରିବେ ହତ୍ୟା ଆପଣଙ୍କୁ ।

କିନ୍ତୁ ଆପଣଙ୍କୁ
ଶାସ୍ତ୍ର ଛିନ୍ନ କରେ ନାହିଁ
ଅଗ୍ନି କେବେ ଭସ୍ମ କରେ ନାହିଁ
ତେଣୁ ତ ଆସନ୍ନ ଏହି ଭୟାବହ ରକ୍ତପାତ ଅସୀଘାତ ଜନିତ ଯନ୍ତ୍ରଣା
ମିଥ୍ୟା ମାୟା, ମୋହ, ପ୍ରହେଳିକା
ସତ୍ୟ ସତ୍ୟ ଏକମାତ୍ର ସତ୍ୟ ହିଁ ଆପଣ
ମୋ ଘୋଡ଼ାର ହ୍ରେସାରବ, ବଧବାର କୋହ ଯନ୍ତ୍ରଣାରେ
ଅସହାୟ ଶିଶୁର କାନ୍ଦଣା ଅବା କବନ୍ଧ ନାଚରେ
ସତ୍ୟ ସତ୍ୟ ଏକ ମାତ୍ର ସତ୍ୟ ହିଁ ଆପଣ
ବନ୍ଧୁ ଜ୍ଞାତି ସହୋଦର, ମାତୁଳ, ପିତୃବ୍ୟ
ସମସ୍ତେ ଆପଣ ପୁଣି, ସମସ୍ତଙ୍କ ହତ୍ୟାରେ ଆପଣ ।"

ମହାରାଜ
ଅର୍ଜୁନର ଏ ଉତ୍ତରେ ଭଗବାନ କୃଷ୍ଣ ବାସୁଦେବ
ନିତ୍ୟାନ୍ତ ବିରକ୍ତ ହୋଇ ରଥ ଧୀରେ ମୁହାଁଇଲେ
କୁରୁ ସୈନ୍ୟ ବ୍ୟୂହ ଆଡ଼େ
ଅର୍ଜୁନ ମୁହଁରେ ହସ, ଚକ୍ଷୁ ତାର ଜ୍ୱଳନ୍ତ ଓ କୃତାନ୍ତ ନିଷ୍ଠୁର ।

କିନ୍ତୁ ମହାରାଜ
ଏହି ଯୁଦ୍ଧ ବିଗ୍ରହର ଆରମ୍ଭରେ
କୃଷ୍ଣଙ୍କର ବକ୍ତୃତା ଓ ଉଦ୍‌ବୋଧନ, ସେପ୍‌ଟିକ୍ ସନ୍ଦେହ
ସମାପ୍ତ ର ସୂଚନା ତ ମୋ ଦୃଷ୍ଟିରେ ଦିଶେ ନାହିଁ·········
ଆପଣଙ୍କ ଦୃଷ୍ଟିହୀନ ପରିବ୍ୟାପ୍ତ ଅନ୍ଧକାର ତଳେ
ବୀର ଗାଥା ବୀର ଧର୍ମ ଜାଣିବାକୁ ଏ ଆଗ୍ରହ
ଅତି ସ୍ୱାଭାବିକ ।

କିନ୍ତୁ ମହାରାଜ
ଦୂର ଦୂର ପ୍ରସାରିତ ମୋ ଦୃଷ୍ଟିର ଅନ୍ତହୀନ ଏହି ଦିଗ୍‌ବଳୟ

ବେଷ୍ଟିତ ଯନ୍ତ୍ରଣା କ୍ଷତ ଆହତ ଏ ରକ୍ତାକ୍ତ ପୃଥିବୀ
ବହୁ ଭୟ, ବହୁ କ୍ଷୟ ବିପ୍ଳବ ଓ ରକ୍ତପାତ ଡେଇଁ
ବହୁ ଶ୍ରମ, ବହୁ ଚେଷ୍ଟା, ବହୁ ଯୁଗ ଘାତ ପ୍ରତିଘାତ
ଶେଷରେ ବି ସେହି ଭୟ ସେହି ହତ୍ୟା ମଣିଷର ରକ୍ତାକ୍ତ ଯନ୍ତ୍ରଣା……
ଏମାନେ ସମସ୍ତେ
ରାଜା ପ୍ରଜା ସେନାପତି ସୈନ୍ୟ ଓ ସାମନ୍ତ
ବାରମ୍ବାର ଫେରୁଥିବେ ପୃଥିବୀକୁ
ଧର୍ମ ଜାତି ଦେଶ ଆଉ ଆଦର୍ଶ ଯୁକ୍ତିରେ
ବାରମ୍ବାର ପିତା ପୁତ୍ର ପିତୃବ୍ୟ ହତ୍ୟାରେ
ଜର୍ଜରିତ କୁରୁକ୍ଷେତ୍ର ଫେରୁଥିବ ପୃଥିବୀକୁ
ଅନ୍ତହୀନ ସମସ୍ୟାର ରୋଗଗ୍ରସ୍ତ ବିକୃତ ବ୍ୟାପ୍ତିରେ ।

ତେଣୁ ମହାରାଜ
ସବୁ ଯୁକ୍ତି, ସବୁ ତର୍କ ବକ୍ତୃତା ଓ ଉଦ୍‌ବୋଧନ ପରେ
ମୁଁ ମୋଟେ ପାରେ ନା ବୁଝି ଭଗବାନ କୃଷ୍ଣ ବାସୁଦେବ
କୁରୁକ୍ଷେତ୍ର ପରି ବହୁ ବିଭିନ୍ନ କ୍ଷେତ୍ରରେ
କେତେ ଥର ?……କାହିଁକିବା ?
କରୁଥିବେ ଆତ୍ମହତ୍ୟା ଏହିପରି
ଆପଣାକୁ ହତ୍ୟା ଏହିପରି ?



॥ କବିତା ସମାପ୍ତ ॥

# ଲ୍ୟାଣ୍ଡ୍ ସ୍କେପ୍

( ଏକ )

ଏତେ ବସ୍ ଟ୍ରକ୍ କାର୍
ବରାବର ଚାଲୁଥିଲା ବେଳେ
ଏ କୃଷ୍ଣଚୂଡ଼ାର ରଙ୍ଗ ଲାଲ୍ ଥିବା
ରହିଲା କେମିତି ?

ବିସ୍ମୃତ ବିଲୁପ୍ତ ଦୂର ଶତାବ୍ଦୀର କେଉଁ ମୁହୂର୍ତ୍ତରୁ
ସେ କେଉଁ ପ୍ରଥମ ରକ୍ତ ସଞ୍ଚାରରୁ
ଏ ନାଲି ରଙ୍ଗର ଯାତ୍ରା ଦିଗନ୍ତର କେଉଁ ଅଜ୍ଞାତରୁ
ଆଜିର ଏ ଏପ୍ରିଲ୍ ଖରାକୁ ।

ଆଜି ଥୁଣ୍ଟା ପାହାଡ଼ର ରାସ୍ତା ଚଟାଣରେ
ବୈଶାଖ୍ୟ ଖରାର ଏତେ ନାଲି ଧୂଳି
କାର୍ ବସ୍ ଟ୍ରକ୍ ଜିପ୍ ଚକର ଧୂଳିରେ
ସ୍ମଗ୍ ଲୁହା କାରଖାନା ଚିମ୍ନୀର ଧୁଆଁରେ
ଏ କୃଷ୍ଣଚୂଡ଼ାର ରଙ୍ଗ ସତେ କହ ସତେ କହ
ସେତେ ଲାଲ୍ ରହିଲା କେମିତି ?

ମୁଁ ତେଣୁ ଏ ଏକ୍‌ସପ୍ରେସ୍ ବସ୍ ଝରକାରୁ
ବୁଝିବାକୁ ଚେଷ୍ଟା କରେ
ମୋ କଳା ଚଷମା କାଚ ଏ ପାଖରୁ
ଏ ନାଲି ରଙ୍ଗର କଣ ସମସ୍ୟା ବା
ଏ କୃଷ୍ଣଚୂଡ଼ାର କଣ ଆଜର ଚଣକ ।

ପ୍ରସେସନ୍ ବସ୍‌ପୋଡ଼ା ଲାଠିଚାର୍ଜ୍ ଗୁଳିକାଣ୍ଡ ପରେ
ସରକାରୀ ତଦନ୍ତର କମିସନ୍ ଟେବୁଲ୍ ସେପାଖେ
ଅବସରପ୍ରାପ୍ତ ବୁଢ଼ା ଚେଆର୍‌ମ୍ୟାନ୍ ମୋଟା ଚଷମାରେ
ଯେମିତି ଜଟିଳ ପ୍ରଶ୍ନ
ମୋ କଳା ଚଷମା ତଳେ ମୋର୍ ବି କଣ ସେହି ଦୁର୍ବୋଧତା !

ଏ କୃଷ୍ଣଚୂଡ଼ାର ନାଲି କେଉଁ ଲୁପ୍ତ ଆକାଶ ସନ୍ଧ୍ୟାରୁ
ଆଜି ଆସି ଏ ରାସ୍ତାରେ
ଏତେ ବସ୍, ଟ୍ରକ୍, ଜିପ୍ ଦୋଉଡ଼ର ଘୁଲୁଥିବା ବେଳେ
ତା ରଙ୍ଗ ବା ସେତେ ଲାଲ ରହନ୍ତା କେମିତି ?

ଚଣକ ସହାର ପରେ ଏ ନାଲିର ଯାତ୍ରା ତେବେ
କାହ କେଉଁଠାକୁ ?
ଆସନ୍ନ ବସନ୍ତ କେଉଁ, ମିଶ୍ରୁମାଣ ସ୍ୱପର୍ଶିତ
ଅନଶ୍ଚିତ ଗ୍ରୀଷ୍ମରଖାର କେଉଁ ସୂର୍ଯ୍ୟାସ୍ତକୁ ?



# ଲ୍ୟାଣ୍ଡ୍ ସ୍କେପ୍

( ଦୁଇ )

ଆଷାଢ଼ର ଏହି ମେଘ ଧୂସରତା ଏ ଆକାଶ ନଷ୍ଟ ଏହି ପ୍ରସୂତର ମୁହଁ
ନଗାଡ଼ ଦେହର ରକ୍ତ ମଥିତ ମାଂସର ଚେଷ୍ଟା ଯଦି ଆସେ ମୃତ ଶିଶୁ ତାର
ତା ହେଲେ ଉଲଗ୍ନ ଘୃଣ ଦେହର ନଷ୍ଠୁର ନଆଁ ଦଳିତ ଦେହ ଓ ଆତ୍ମା
ମାଂସରୁ ରକ୍ତର ଛନ୍ଦ, ପ୍ରାଣରୁ ଆତ୍ମାର
କ୍ଷତ ଓ ଯନ୍ତ୍ରଣା ଯେତେ, ତାର ଏହି ବ୍ୟର୍ଥତା ବା
ଏ ମେଘ ଏ ଧୂସରତା ମୃତ୍ୟୁ ଅବା କି ପାପର ମୁହଁ ।

କୁମାରୀର ମାତୃତ୍ୱର ଲାଞ୍ଛନା ଓ ଉପ୍ସଧର ଏ ଅନ୍ଧାର ଏକ ଅଭିଶାପ
ଏ ଆକାଶ ଜନ୍ମ ଦେବ ଘୃଣରେ ଝଡ଼ ବା ତାର ?   ଏ ସନ୍ଧ୍ୟାର
ଧୂସର ଦେହରୁ
ମେଘରେ ମେଘରେ ସ୍ତବ୍ଧ, ବିବର୍ଣ୍ଣ କ୍ଲାନ୍ତ ଏ ମୁହଁ ଆଜି ଧରେ
କେଉଁ ମହାପାତ
ମୋ ସତ୍ତାର ତିକ୍ତତାରେ ଆଜି ଆସି ଗ୍ରୁଇଯାଏ
ମାତୃତ୍ୱର ବ୍ୟର୍ଥ ଚେଷ୍ଟା—ଏ ମେଘ ଏ ଧୂସରତା—ନଷ୍ଟ ଏହି
ପ୍ରସୂତର ମୁହଁ ।



# ଲ୍ୟାଣ୍ଡ୍ ସ୍କେପ୍

( ତିନ )

ନିର୍ଜନ ନିଃଶବ୍ଦ ଏହି ଦିପହର
ବହୁତ ଦୂରରୁ, ସ୍ତବ୍ଧ ମୂର୍ଚ୍ଛାହତ ଏ ଖରାର ମର୍ମଦାହ ଭେଦ
କାପ୍ତ ର ନିର୍ଜନ ଡାକ
ନିଃଶବ୍ଦ ପାଣିର ସୂକ୍ଷ୍ମ ସଞ୍ଚାରରେ
ଏ ନିର୍ଜନ ଦିପହର ନିଃସଙ୍ଗ ଓ ଆହୁରି ନିର୍ଜନ

ମୋର ଜନ୍ମ ତାରିଖରୁ, ଶୈଶବ ଓ ଯୌବନରୁ
ଆଜିର ଏ ବୃଦ୍ଧାବସ୍ଥା ଯାଏ
ଏ ନିଃସଙ୍ଗ ନିର୍ଜନତା କ୍ରମେ କ୍ରମେ ଜମି ଜମି
ଆଜି ଯେବେ ପୁଞ୍ଜିଭୂତ ଜମାଟ ନିଶ୍ଚଳ
ଏ ନିର୍ବାକ୍ ଦିପହର ସ୍ତବ୍ଧତାକୁ ପାରିହୋଇ
ବିଚ୍ୟୁତ ମୋ' ସମସ୍ତର କେଉଁ ଆକାଶରେ
ଏ ନିର୍ବାକ୍ ଗତି ମୋର କହ କେବେ ସ୍ଥିର ହେବ...... ?

ଏ ଖରା ଏ ଦିପହର, କାପ୍ତାର ନିଃସଙ୍ଗ ଡାକ
ନିଶବ୍ଦ ସମସ୍ତ ଗତି
ନିର୍ଜନତା ନିଃସଙ୍ଗତା
କେଉଁ ପରିସମାପ୍ତିରେ ?......
ନିରର୍ଥକ ମୋ ସତ୍ତାର କହ କେବେ ନିଃସଙ୍ଗ ମୁକ୍ତିରେ ?



# ନିଦ

ଦେହରେ ରାତିର ଶାନ୍ତ ବିଛଣାରେ ଅନ୍ଧାର ନିଦ
ଅନ୍ଧାରର ନିଦ ରହେ ଏଠି ଗଳି ରାସ୍ତା କୋଠା ବସ୍ ରିକ୍ସା
ଦୋକାନକୁ ଘେରି
ଅପନ୍ତରା ଗନ୍ଧାରର ଖଜୁରୀ ଓ କଣ୍ଟା ଗଛ ଘାସ କିଆବଣ
ଘୋଡ଼ାଇ ମୋ ବିଛଣାରେ ଅନ୍ଧାରର ନିଦ ଓ କୁହୁଡ଼ି ।

ମୋ ଦେହରେ ରାତି ପାଇ ରୂପନ୍ତର ତୃଷ୍ଣ ଆସେ ତାରା ଆଲୁଅର
ପବନର ହାତ ପାଇ ଆଉଁସି ନଈର ଧାର ଶିଉଳିର ଅବିନ୍ୟସ୍ତ ବାଳ
ଅନ୍ଧାରି ଓ ବାଲିଚରର କଣ୍ଟା ଘାସ ଘାରି
ବିଛଣାକୁ ନିଦ ଆସୁ ବୁଣି ବୁଣି ମଶୁଆରେ ଆକାଶର ତାରା ଆଉ ତାରା ।

ଏ ନିଦରେ ଜନ୍ମ ନାହିଁ ସ୍ୱପ୍ନ ନାହିଁ, ଗୀତ ନାହିଁ
ଟ୍ରକ୍ ବସ୍ କୋଠାଘର ସହରର ନିର୍ଜନ ରାତିରେ
ଏ ନିଦରେ ଅନ୍ଧାରର, ପବନର, ଫାଲ୍ଗୁନର ନିଭିଯିବା ନିଦ ।



## କ୍ରୀଶ୍‌ମାସ୍‌

ଶୀତର ଏ ସନ୍ଧ୍ୟା ଜମେ ଗ୍ରହାକନ୍‌ ପିଆଜ ବାସ୍ନାରେ
ଶୀତର ଏ ସନ୍ଧ୍ୟା ଜମେ ବଡ଼ଦିନ ଛୁଟିର କ୍ଳାନ୍ତିରେ
ବହଣ୍ଡ ଖବର ଏନ୍ଥ ଉଦାସତା ଅନ୍ୟମନସ୍କତା
କେଉଁ ଅନୁଶୋଚନାର କୋହ ଆଣେ ଏ ନିର୍ଜନ ଶୀତର ସନ୍ଧ୍ୟାରେ !

କେଉଁ ଅନୁଶୋଚନାରୁ ଜନ୍ମ ତାର ?   ସ୍ମୃତି ଆଜ ତା ଜନ୍ମଦିନର !
ଅସଂଖ୍ୟ ଯୁଗର କେତେ ବର୍ଷବଳୟ .....କେତେ ମରୁଭୂମି
ବରଫ କାନ୍ତାର ଡେଇଁ ପାରି ହୋଇ ଅସଂଖ୍ୟ ସମୁଦ୍ର
ଏ ସନ୍ଧ୍ୟାରେ ସ୍ମୃତି ଆସେ କେଉଁ ମରୁ ପ୍ରାନ୍ତରରୁ
ଆଜ ତାର ଜନ୍ମ ତାରଖର ?

ଜନ୍ମରୁ ତ ଯାତ୍ରା ତାର ଶ୍ରେଷ୍ଠ ଏକ ସହରର ସଙ୍କୀର୍ଣ୍ଣ ଗଳିରୁ
ବ୍ୟଥିତ ମଥିତ ଉକ୍ତ ମଣିଷର ଅନ୍ତରାତ୍ମା ତଳେ
ତା ରକ୍ତ ଛତର ସ୍ନେହ
ଆଣିଥିବା ଆଶା କେତେ, ଶକ୍ତି କେତେ
ଜୀବନ ଓ ମୃତ୍ୟୁରେ ବିଶ୍ୱାସ......
ତା ଛୁଇର ପାଦ ଶବ୍ଦ ପ୍ରାଚୀନ ସେ ସହରରୁ
ଆଜର ଏ ସହର ରାସ୍ତାରେ
ଏ ସନ୍ଧ୍ୟାରେ ଶୁଭେ କଣ ?   ତାବ୍ରକ୍ଷ ଆଦ୍ରତର ଛାପ୍ତ
ଆଜର ଏ ସମୟର ପୁଞ୍ଜିଭୂତ ଅନୁଶୋଚନାରେ ?

ବିଷଣ୍ଣ ଖବର ଏନ୍ଧ ଉଦାସ ଓ  ଅନ୍ୟମନସ୍କତା
ଟ୍ରାଫିକ୍ ସାଇନ୍ ପଣ
ବଢାଏ ବା ହାତ ତାର
ନିଶାର୍ଦ୍ଧର ସେ ନିର୍ଜନ ପନ୍ଥର ଆଡ଼କୁ
ଯେତେବେଳେ ସହରର ଆକାଶରେ ସଂଖ୍ୟାହୀନ ଥଣ୍ଡା ତାରା ସବୁ
ଦେଖୁଥିବେ ଚୁପ୍‌ଚାପ୍
ସିମେଣ୍ଟ୍‌ର ଜସ୍ ଘେର
ଯୁଗରୁ ବଞ୍ଚିତ ଯୁଗ
ସେ ରକ୍ତାକ୍ତ ମୃତ୍ୟୁ ପରେ
ସମସ୍ତର ପୁଞ୍ଜିଭୂତ ବେଦନା ଓ ବ୍ୟର୍ଥତାର
ଅନୁଶୋଚନାକୁ



## ଜନ୍ମଦିନ

ହାତ ରହେ ଚୁପ୍‌ଚାପ୍ ଟେବୁଲ୍, ଡେକ୍‌ସ, ପକେଟ ଭିତରେ
ଗୀତ ଯାଏ ଚୁପ୍ ହୋଇ ରେଡ଼ିଓରେ, କ୍ୟାସେଟ୍‌ରେ
ସାଂପ୍ରଦାୟିକ ସାହିତ୍ୟ ସଭାରେ
ଯେତେବେଳେ ବନ୍ଦ ସବୁ ସ୍କୁଲ କଲେଜ ଅଫିସ କଚେରି
କାର ଜନ୍ମ ତାରିଖର ଗ୍ଲାନି ପଡ଼େ ଆମର ଏ ସହରର ନିଷ୍ଫଳ ମୁହଁରେ ?

ଚଢ଼ି ଚଢ଼ି ସମସ୍ତର ପାଚେରି ଓ ଅସଂଖ୍ୟ ପାହାଚ
ଶିକୁଳି ଓ କଣ୍ଟାବାଡ଼ ପାର ହୋଇ
ଆମେ ଯଦି ଆସି ଆଜି ଫାଇଭ୍‌ଷ୍ଟାର୍ ହୋଟେଲ୍ ରାସ୍ତାରେ
ସ୍ୱାଭାବିକ ଭୁଲିଯିବା ସେଦିନର ରକ୍ତାକ୍ତ ଆକାଶ
ପ୍ରଥମ ପାହାଚ ଚଢ଼ି ଉଠିବାର ନିଷ୍ଠୁର ଯନ୍ତ୍ରଣା

ଆମର ନିଶବ୍ଦ ରାତି ଆଣୁଥିବ ଆମପାଇଁ ଅନ୍ଧାରରୁ ଆହୁରି ଅନ୍ଧାର
ଆମର ନିଃସଙ୍ଗ ସନ୍ଧ୍ୟା ଆଣୁଥିବ ସୂର୍ଯ୍ୟାସ୍ତରୁ ଅକଥିତ ଭସ୍ମ
ଅକ୍ଟୋବର ଆକାଶରୁ ଆସୁଥିବ ପ୍ରତିବର୍ଷ
ଛିନ୍ନ ସ୍ମୃତି ସେ ଶିଶୁର
ତା ହତ୍ୟାର ଗୁଳିର ଆବାଜ୍ ।
ଆଜି ପୁଣି ବର୍ଷେ ପରେ ଏ ସହର ମୁହଁ ଢାଙ୍କି ଗ୍ରାସେ ତାର ଜନ୍ମ ତାରିଖର ।



# ଏମର୍‌ଜେନ୍‌ସି

( ଏକ )

ହେନା ଫୁଲ୍ ବାସ୍ନାରେ ବେହୋସ ସହରର ଜହ୍ନ
ଅନିଦ୍ରାର ଟେବୁଲ୍ ଲ୍ୟାମ୍ପ୍ ଫିକା ବଲ୍‌ବ ପରି
ନିଶାଖୋର ଦୋସ୍ତ ମୋର ରମ୍ ବୋତଲ୍ ସରିଗଲା ପରେ,
ମାତାଲ୍ ନିଶାର ହସ ଯେତେବେଳେ ଚୁପ୍ ହେବ
ଜହ୍ନ ଯେବେ ଜଣାଯିବ ଭୋଲ୍‌ଟେଜ୍ କମିଗଲା ପରି,
ସେତେବେଳେ କେଉଁ ଯୁକ୍ତି, କେଉଁ ଭିଜନ୍, କେଉଁ କୋଟେସନ୍
ତୋ ନିଃସଙ୍ଗ ବାଟ ପାଇଁ ଆଣି ଦେବ ଖୋରାକ୍ ବା
କେଉଁ ଆଶା, କେଉଁ ଡାକଘରର ଠିକଣା ?

ନିଶାଖୋର ଦୋସ୍ତ୍ ମୋର ତୋ ଆଖିର କଳା ପଦ୍ମଫୁଲ୍
କେଶର, ପାଖୁଡ଼ା ଡେମ୍ପ ଛିଣ୍ଡି ସଢ଼ିଗଲା ପରେ
ଜନ୍ଦା ମାଛ ବେଢ଼ିଗଲେ ଆମେ ତୋର ଦୋସ୍ତମାନେ
କେଉଁ ଗ୍ରୀକ୍ ନାଟକର କେଉଁ କୋରସ୍‌ରୁ
ଜୀବନର ଜ୍ୱାଳା ଆଣି ତୋ କୋକେଇ କଫିନ୍‌ରେ
ଦେବୁ କହ କାର ବ୍ୟାଖ୍ୟା ? ପ୍ରବଚନ ? କାହାର ତର୍ଜମା ?

ନିଶାଖୋର୍ ଦୋସ୍ତ ମୋର ଲାଲ୍ ଲାଲ୍ ଆଖି ତୋର
ତୋ ହସର ଷଣ୍ଡାମି ଭିତରେ

ହେନା ଫୁଲ ବାସ୍ନାର ଏହ ଜନ୍ମ, ଏହ ତାସ ରବବାର ସତ
ଛନ୍ଦ ହୋଇ ଗଲ ପରେ ବାଲ୍ଠୁ ଅପେକ୍ଷା ତୋର
ସପ୍ତାହ ସପ୍ତାହ ଡେଇଁ ରୁଟିନ୍‌ର କେଉଁ ଉପାନ୍ତକୁ ?
ତୋ ଅପେକ୍ଷା କହ କେଉଁ ଦୁଷ୍ଟ ଅପଦେବତାର
ଅଭିଶପ୍ତ ତୋ ଦେଶରେ ତୋ ଆତ୍ମାର ଜାତୁ ଅବା ଅପମୃତ୍ୟୁ ପାଇଁ ?

●●

## ଏମର୍‌ଜେନ୍‌ସି

( ଦୁଇ )

ପାଚଟ୍ଗଣ ପଷ୍ଟର୍ ମ୍ୟାଗାଜିନ୍, ବନ୍ଧ ମଲାଟରେ
ସେ ଆଖି ଅନାଇଁ ରହେ····· ···
ରାସ୍ତାରେ
ରେସ୍ତୋରାଁ, ବନ୍ଧ ଷ୍ଟଲ୍, ସ୍ମୃତି ଦୋକାନରେ
ସହରର କାର୍ ସ୍କୁଟର,
ସଙ୍ଗରେ କ୍ଲବ୍‌ରେ
ଡାକଘର, ଡାକ୍ତରଖାନାରେ
ହଠାତ୍ ସେ ଆଖିତଳୁ
ଅତର୍କିତ, ସେ ମୁହଁର ହସ ଆସି ଧକ୍କା ଖାଏ
ଅସହାୟ ମୋ ମନର ନିରୁପାୟ ଜଡ଼ ଚେତନାରେ

ପୂର୍ଣ୍ଣ ଖାଦରେ ମୋର ଯେତେ ଧୂଳି ଅପରିଚ୍ଛନ୍ନତା
ପୂର୍ଣ୍ଣ ସ୍ୱପ୍ନରେ ମୋର ଅସମ୍ପୂର୍ଣ୍ଣ ଯେତେ କଥା ଗୀତ ଓ କବିତା
ଏ ଯାତ୍ରାର ଆରମ୍ଭରୁ ଯେତେ ଦୁଃଖ ଯେତେ ସ୍ଲୋଗାନ୍ ।
ପ୍ରସେସନ୍ ଯେତେ ହାତକଡ଼ି
ସବୁତ ବରଫ ପରି ଥଣ୍ଡା ଓ ଜମାଟ ବାନ୍ଧେ
ସେ ମୁହଁର ପଷ୍ଟର

ସେ ଆଖି, ସେ ଲାଲ୍ ଓଠ
ସେ ସିଲ୍କ, ସେ ଚେହେରର
ଭୟାବହ ଆବିର୍ଭାବ, ଗ୍ରାମ ସହର ବ୍ୟାପି ସୂର୍ଯ୍ୟୋଦୟ ସୂର୍ଯ୍ୟାସ୍ତ ଭିତରେ ।
ମୋ ସତ୍ତାକୁ କ୍ରମେ ଗ୍ରାସ କରେ
ସେ ସତ୍ତାର ଲଜ୍ଜାହୀନ ନିରଙ୍କୁଶ ଲୋଭ, ଭେକ ଅଶ୍ଳୀଳ ନଗ୍ନତା ।

# ଗୋଟିଏ ମୃତ୍ୟୁର ପରେ ପରେ

( ଏକ )

ସକାଳର କାଗଜରେ ସେହି ମୁହଁ
ପ୍ରଥମ ଗରମ୍ ଚା କପ୍‌ର ଧୂଆଁରେ
ସେ ଚେହେରା
ନିର୍ଜନ ରାତିର ପ୍ରବୁଦ୍ଧ ସୀମାନ୍ତରେ
ସେ ଚେହେରା·········।

ହୃଦରେ ବା ଇଂରାଜୀରେ
ଜଡ ଅବା ଚେତନାରେ
ସେହି ସ୍ୱର,
ଓତପ୍ରୋତ ନିରନ୍ତର
ସେହି ପ୍ରତିଧ୍ୱନି

ଅଫିସ୍ ବଜାର, ସ୍କୁଲ କଚେରୀରେ
ଦୋକାନରେ, ରାସ୍ତାରେ
ଯୁକ୍ତିତର୍କ, ହାତାହାତି, ସଭା ବକ୍ତୃତାରେ
ସେ ଚେହେରା ସେହି ମୁହଁ
ହୃଦ ଅବା ଇଂରାଜୀରେ ସେହି ସ୍ୱର

ଓତପ୍ରୋତ ନିରନ୍ତର ଏକ ପ୍ରତିଧ୍ୱନି
ନିଷ୍ଠୁର ଶୀତର ଥଣ୍ଡା ଆକ୍ରୋଶରେ
ସମୟର ଏ ମୁହୂର୍ତ୍ତି ସ୍ଥିର ମିନିଟରେ
ତଥାପି ସେ ପ୍ରତିଧ୍ୱନି
ଓତପ୍ରୋତ ନିରନ୍ତର·········

ଅକସ୍ମାତ୍ ଆଜି କିନ୍ତୁ ଉଦ୍ଘାଟିତ ସମସ୍ତ ଦେହରେ
ଏ ମୁଖା ବା କାହା ପାଇଁ ?   ଉଦ୍ଧାବନ୍ଧ ଏ କି ନିର୍ଜନତା ?



## ଗୋଟିଏ ମୃତ୍ୟୁର ପରେ ପରେ

( ଦୁଇ )

"ସେ ଆମ୍ଭର ମୃତ୍ୟୁ ନାହିଁ"
ଟେଲିଭିଜନ୍, ରେଡ଼ିଓରେ, ଖବରକାଗଜ ପୃଷ୍ଠା
ବକ୍ତୃତାରେ ଶୋକ ପ୍ରସ୍ତାବରେ
"ସେ ଆମ୍ଭର ମୃତ୍ୟୁ ନାହିଁ"

ସେ ଦେହର ମୃତ୍ୟୁ କିନ୍ତୁ ଏତେ ସତ୍ୟ ନିଷ୍ଠୁର ବାସ୍ତବ

ଚନ୍ଦନ କାଠର ନିଆଁ ଜଳିଯାଏ ଜଳିଯାଏ
ତୁମ ଆଖି ସାମ୍ନାରେ ଜଳିଯାଏ ପିଲ୍କ ପଣ ଅଧାକଳା ଅଧାଧଳା ବାଳ
ସେ ଯେଉଁ ଓଠର ହସ
ଆଜିଯାଏ ବନ୍ଧୁ ମୁହଁ ବନ୍ଧୁ ଲୁହ
ବନ୍ଧୁ ଈର୍ଷା ଆକୋଣକୁ ଘାଣ
ଆସିଥିଲା ଆଜ ଯାଏ
ଋତୁ ପରେ ଋତୁର ଉନ୍ମେଷ ପଣ
ସେ ହସ ତ ପୋଡ଼ିଯାଏ, ଜଳିଯାଏ
ସେହି ଓଠ, ସେହି ଆଖି, ସେ ଭ୍ରୂଲତା, ସେ ଚିବୁକ
ଜଳିଯାଏ ଜଳିଯାଏ ପାଉଁଣ ଅଙ୍ଗାର ହୋଇ

ସେ ହାତ ପାପୁଲିର ନଖ
ସେ ସତ୍ତାର ସଙ୍ଗୀତ ଓ ସେ ସତ୍ତାର ସବୁ ବାସ୍ତବତା ।

"ସେ ଆତ୍ମାର ମୃତ୍ୟୁ ନାହିଁ"
ପାହାଡ଼ର କୁହୁଡ଼ିରେ
ପାହାଡ଼ର ବରଫ ଉପରେ
ସହରର ଟ୍ରାମ୍ ବସ୍ ଭିଡ଼ ପାର ହୋଇ
ସେ ଆତ୍ମା ଫେରିବ କଣ
ଆମର ଏ ଏରୋଡ୍ରମ ପଡ଼ିଆକୁ
ଅକସ୍ମାତ ଝାପ୍‌ସା କାର ଗ୍ଲାସିବା ପଛ ଲାଇଟ୍ ନାଲି ସଙ୍କେତରେ
ସେ ଆତ୍ମା ଫେରିବ କଣ
ଏହି ଭିଡ଼, ଏହି ସଭା, ଏହି ନେତା
ଏ ସଂଖ୍ୟାଗରିଷ୍ଠ ଦଳ ଅବା ଏହି ବିରୋଧୀଦଳକୁ ?

ଅଜସ୍ର ସମୁଦ୍ର ଭେଦି ବିକ୍ଷୋଭିତ ବିପ୍ଳବର ଏ ଅଶାନ୍ତ ଗତି
ସେ ହତ୍ୟାର ବାସ୍ତବତା ତା ଭିତରେ ।
ଏ ଅଶାନ୍ତ ଆକାଶରେ ସୂର୍ଯ୍ୟାସ୍ତର ଦେହ
ତା ରକ୍ତାକ୍ତ ମୃତ୍ୟୁ ନେଇ ଫେରୁଥିବ ଚିରନ୍ତନ
ବହ୍ନି ବୋଧ ଅନ୍ତୋଷର ହିଂସ୍ର ବହ୍ନି
ହିଂସ୍ର ସହାରକୁ ।
"ସେ ଆତ୍ମାର ମୃତ୍ୟୁ ନାହିଁ"
ସେ ଦେହ ମୃତ୍ୟୁର ଏହି ଭୟଙ୍କର ବାସ୍ତବତା ପରେ
ଶୂନ୍ୟ ସଭା, ଶୂନ୍ୟ ଗୃହ........
ଆମର ସତ୍ତାର ଏହି ଜନ୍ମଗତ ଶୂନ୍ୟତା ଭିତରେ
"ମୃତ୍ୟୁହୀନ" ସେ ସତ୍ତାର ସ୍ମୃତି ଛଡ଼ା ସାହଚର୍ଯ୍ୟ ସାନ୍ତ୍ୱନା ବା କାହିଁ ?



# ଫେରନ୍ତା ବାଟର ପକ୍ଷୀ

ଫେରନ୍ତା ବାଟର ପକ୍ଷୀ
ତୋ ଆଖିରେ ସୂର୍ଯ୍ୟାସ୍ତର ବିବର୍ଣ୍ଣ ଆକାଶ
ତୋ ଡେଣାରେ ଆଚ୍ଛନ୍ନତା ସଞ୍ଚାରିତ ଗଭୀର ଅନ୍ଧାର
ତୋ କଣ୍ଠରେ ଗୀତ ନାହିଁ, ତୋ ଅଣ୍ଟର ନୀରବତା ତଳେ
ସ୍ନେହ ନାହିଁ, ତୃଷ୍ଣା ନାହିଁ······ଅନ୍ତସାର ଶୂନ୍ୟ ସବୁ ଶୋଷଣ ସମାପ୍ତି
ଫେରନ୍ତା ବାଟର ପକ୍ଷୀ
ତୋ ଡେଣାରେ ଫେରିବାର କ୍ଳାନ୍ତି ଛଡ଼ା ଅନ୍ୟ କିଛି ନାହିଁ ।

ତୋ ଦେହର ଛାଇତଳେ ଢେଉ ଖେଳେ କାଶତଣ୍ଡି ଘାସ
ତୋ ଡେଣାର ନିଶବ୍ଦତା ବାରି ବାରି ନିର୍ଜନ ପଠାରେ
ପବନ ହଠାତ୍ ରହେ ସ୍ଥିର ହୋଇ—ବିଚ୍ଛିନ୍ନ ସ୍ତୂପରେ
ଛୁଇଁ ଖେଳେ ତୋ ଆଖିର ଅସରନ୍ତି ନିଃଶବ୍ଦ ଆକାଶ

ଫେରନ୍ତା ବାଟର ପକ୍ଷୀ ତ
ତୋ ବାଟ ତ ଛାୟାଚ୍ଛନ୍ନ ଆକାଶର ଆସନ୍ନ ଅନ୍ଧାର
ତୋ ବାଟ ତ ସମାପ୍ତିର ନିଃସଙ୍ଗତା ସମାପ୍ତର ନିଃସଙ୍ଗ ନିଶ୍ୱାସ

# ନିଶ୍ଚିନ୍ତକୋଇଲି

କୋଇଲି ଗାଏନି ନାହିଁ ସେ ଗାଆଁରେ—ସେଠି କିନ୍ତୁ
ଧାନକ୍ଷେତ ଧାନକ୍ଷେତ ଅପର୍ଯ୍ୟାପ୍ତ ସବୁଜ ସବୁଜ
ଆମ୍ବ ବେଲ ପଣସର ନିଘଞ୍ଚ କୋଠାରେ
ଦୁପହର ନିତ ଘୋର ଗାଢ଼ ନିଶ୍ଚଳ ନିବୁଜ
ପତ୍ର ଡାଳ ଜଙ୍ଗଲର କୋରଡ଼ରେ ଅନ୍ଧାର ଭିତରେ
କୋଇଲି ବି ନିଶ୍ଚିନ୍ତ ନିଖୋଜ ।

ବସ୍ ସେଠି ଛୁଟାହେବ ।   କଣ୍ଡକ୍ଟର "ନିଶ୍ଚିନ୍ତକୋଇଲି"
କେହି ତ ଚଢ଼ିଲେ ନାହିଁ କେହିବି ତ ଓହ୍ଲାଇଲେ ନାହିଁ
ଚୁପ୍ ଚାପ୍ ଚାରିଆଡ଼ ଡ୍ରାଇଭର୍ ଗଣ୍ଡି କାଣ ଛଡ଼ା
ନିଦରେ ନିଦରେ ସବୁ ଚୁପ୍‌ଚାପ୍
ସିଲେଇ ମେସିନ୍ ଚକ, ଚା ଦୋକାନ କେଟ୍‌ଲିର ଧୂଆଁ
ଚା ବାଲା ଆଖିପତା
ସେଦିନ ସେ ଦୁପହର···ବସ୍ ସେଠି ଛୁଟାହେଲା ବେଳେ
ଆକାଶ ପୃଥିବୀ ସବୁ ଢୁଲ୍‌ଢୁଲ୍ ନିଦରେ ନିସ୍ତେଜ ।

କୋଇଲି ନିଶ୍ଚିନ୍ତ ବୋଧେ ସବୁଦିନ ଶୋଇଥାଏ
ସେ ଗାଆଁର ଜଙ୍ଗଲ କୋଠାରେ
ସେଠି ଧାନ କ୍ଷେତ ଘାସ ବାଦଲ୍ ବି ଶୋଇପଡ଼େ

ସେଠି ଆସେ ଆଷାଢ଼ ଫାଲ୍ଗୁନ୍
ପୃଥିବୀ ଓ ଆକାଶରେ ସେ ପୋଷାକ ରଙ୍ଗ କ'ଣ ?
କେଉଁ ଷ୍ଟାଇଲ୍ କେଉଁ ଫେସନ୍‌ର ?

ସହଯାତ୍ରୀ ବନ୍ଧୁ ମୋର
ତୁମ ଆଖି ନିଶ୍ଚଳ ପତାରୁ
ସ୍ମୃତ ସ୍ମୃତ ନଦ କାକ୍ଷ ଆଣି ମୋ ଆଖିପତାରେ!
ଆସ୍ତେ ଆସ୍ତେ ଢାଳି ଢାଳି
ଏ ପଦ୍ମର ବକ୍ଷର ନଦରେ
ମୁଁ ତୁମକୁ ଭଲପାଏ—ଭଲପାଏ
ତୁମର ଓ କୋଇଲର ନିଶ୍ଚିନ୍ତ ନଦର ଦେଶ
ନିଶ୍ଚିନ୍ତ କୋଇଲି ଡେଇଁ ଓଡ଼ିଶାର ସୀମା ପାର ହୋଇ
ଜରଙ୍ଗ ଓ ମରୁଭୂମି, ଗାଁ ଘାଟି ଜଙ୍ଗଲର ସନ୍ଦରର
ସବୁ ନଈ ପର୍ବତର ସମୁଦ୍ରର ତୁମର ଆଖିର ବ୍ୟାପ୍ତି
ତୁମର ଓ ମୋର ଏହି ପରିବ୍ୟାପ୍ତ ଏ ଦେଶର
ଏଠି ବସ୍ ଛୁଟା ହେବା ମୁହୂର୍ତ୍ତର ସୁନ୍ଦର ଆକାଶ ।



# ନିଶ୍ଚିନ୍ତକୋଇଲି —ତିରିଶ ବର୍ଷପରେ

କୋଇଲିର ମୃତ୍ୟୁ ପରେ ବଜାରରେ ବହୁତ ଦୋକାନ
ରାସ୍ତାରେ ବି ଲୋକ ଭିଡ଼, ବ୍ୟବସାୟୀ, କାର୍‌-ଟ୍ରକ୍‌ ବସ୍‌ ବି ବହୁତ
ଧାନ କ୍ଷେତ ଛୋଟ ବଣ କୋଇଲିର ମୃତ୍ୟୁର ସ୍ମୃତିରେ
ଦେଖାଯାଏ ଦିପର୍ଯ୍ୟନ୍ତ ଧୂସର ବିକ୍ଷତ ।

କୋଇଲିର ମୃତ୍ୟୁ ପରେ ରାଜାଙ୍କର ସୈନ୍ୟ ପ୍ରତିହାର
ଦିଗ୍‌ବଳୟକୁ ପାରି ହୋଇ କେବେଠୁ ଗଲେଣି ଚାଲି
ବଜାରର ଦୋକାନ ଭିତରେ
ରେଡ଼ିଓରେ ଗୀତ ବାଜେ ଇଲେକ୍‌ସନ୍‌ ସ୍ଲୋଗାନ୍‌ ସବୁଠି
ଆଜିକାଲି ଏଠି ଯେବେ ବସ୍‌ ଆସି ଧୀରେ ଛିଡ଼ା ହୁଏ
ବସ୍‌ଯାତ୍ରୀ ବନ୍ଧୁ ମୋର କୋଇଲିର ନିଖୋଜ ସ୍ମୃତିରେ
ଏ ମୋର ଓଡ଼ିଆ ମନ ଉଦାସ ବ୍ୟଥିତ ଖୋଜେ
ଦୋକାନ ଭିତରେ ମିଶି ହଜି ନଭି ଯାଇଥିବା
ତା ଆକାଶ ତା ପୃଥିବୀ ତାର ନିଜ ଦେଶର ଠିକଣା ।



## ମାର୍ଶାଘାଇ

ଏଠିତ ସକାଳ ଆସେ ହଳଦିବସନ୍ତ ପଣ
କାକର ଓ ଖରା ଛୁଇଁ ଘାସରେ ପତ୍ରରେ
ସକାଳ ଖରା ତ ଏଠି ନାଲି ହାତ ପାପୁଲିରେ
କୁହୁଡ଼ି ଆଡ଼େଇ ଯାଏ ଆମ୍ବତୋଟା ଖଜୁରି ଗଛରୁ
ଆର ପାଖେ ଏ ଗାଆଁର ରାଜନୀତି ଧାନକଲ
ବ୍ୟବସାୟ ଚାଲୁଥିବାବେଳେ
ଏ ପାଖେ କେନାଲ୍ ପାଣି ସ୍ରୋତରେ ତା ରୂପ ଧରେ
ଖରା ଆଉ କୁହୁଡ଼ିର ନରମ ଦେହର ସ୍ନେହ
ଆକାଶର ନେଳି ଆଖି ଚାହାଣିରେ
ଯୁଝ ଯେତେ ଭଲ ପାଉଥିବାର ।

ଏଠିତ ଋତୁର ରଙ୍ଗ କେବେହେଲେ ସରେ ନାହିଁ
ଧୂସର ପାଉଁଶ ରଙ୍ଗ ଆଷାଢ଼ ମେଘର
ଶରତ ବାଦଲ୍ ଯାଏ ଧାନକ୍ଷେତ ଲହରିରେ
ଇତସ୍ତତଃ ଚୁଇଁ ଚାଲି ମିଶି ମିଶି ଆକାଶ ନୀଳରେ
ଏଠିତ ଫାଲ୍ଗୁନ ଆଣେ କଣ୍ଟାଫୁଲ୍ ଅରମାରେ
ଆସନ୍ନ ଖରାର ତାତି
ଆସନ୍ନ ଝଡ଼ର ଜଦ ଧୂଆଁବଳ ବାଦାମି ଦେହରେ ।
ଏଠିତ କେନାଲ୍ ପାଣି ହଳଦିଆ ଶବଦ୍‌ରେ

ସନ୍ଧ୍ୟା ଆସେ ଗୁଟି ଗୁଟି ନାଲି କାଳି
ଟାଣି ଟାଣି ଗାଢ଼କଲା ପେନ୍‌ସିଲ୍ ଦାଗ

ଏଠିତ ମାଟିର ଗନ୍ଧ ବୁପ୍ କେବେ ହୁଏ ନାହିଁ
ଶୀତ ରାତ ଅନ୍ଧାରରେ କାକରର କଥା କେତେ
ଜନ୍ମଥର ସଜପାଖୁଡ଼ାରେ
ଝିଙ୍କାରର ଝିକ୍ ଝିକ୍ ଜିଦ୍‌ଖୋର ଦୁଷ୍ଟ ପିଲା ପରି
ରାତକୁ ଅନିଦ୍ରା ରଖେ ଅନ୍ଧାରିଲା ସୁନୁଚଣା ଘାସ ଅରମାରେ ।
ପଞ୍ଚୁଡ଼ା ଚଇଁତର ନିର୍ଜନ ରାତର କଥା
ଟେଣ୍ଟେଇ ପକ୍ଷୀର ଡାକ
ବାଦୁଡ଼ି ଡେଣାର ଝାପ୍‌ଟା
ଜନ୍ମ ତାର ଆକାଶରୁ ମିଶେ ଆସି ମୋ ଆଖିର ନଶନ୍ଦ ନନ୍ଦରେ ।

ମୋ ଶ୍ରୁତି ଓ ଚେତନାର ନିର୍ବାକ୍ ସମସ୍ତ ଘାଣ
ଆଜ ଏଠି ପୃଥିବୀର ଏତେ ବେଶୀ ଅହେତୁକ ସ୍ନେହ
କେଉଁ ମାର୍ଶ ସାହେବର * ବଗିଚ ସ୍ମୃତିରୁ ଆସି
ଏତେ ରଙ୍ଗ, ଏତେ ଗୀତ
ପାଣି ପଙ୍କ ଅରମାରେ ଏତେ ଘାସ, ଏତେ କଣ୍ଟାଫଳ
ମୋର ସନ୍ଧ୍ୟା ସକାଳର ଦପନ୍ଦର ନିଃସଙ୍ଗ ରାତର
ମୁମୂର୍ଷୁ ଚେତନା ଛୁଇଁ ଶାନ୍ତି କ୍ଳାନ୍ତ ମୋ ଅନୁଭବରେ
ଏ ପୃଥିବୀ ଚେଇଁ ଉଠେ ଜୀବନର ଭଲପାଇବାରେ
ଏ କ୍ଷତ ପୂରଣ କଣ ମୋର ନଷ୍ଟ ଚେତନାର
ଚକ୍ରତା ଓ ଅନ୍ତର୍ଦାହ ପାଇଁ ?

---

* କମ୍ବଦଲ୍ତୀ ଅଛି ଯେ ମାର୍ଶ ନାମକ ଜଣେ ଇଂରେଜ ଇଷ୍ଟଇଣ୍ଡିଆ କମ୍ପାନି ସହିତ ଆସି ଗୋଟିଏ କେନାଲ୍ ଖୋଲାଇଥିଲେ । କେନାଲ୍ ସରିବା ପରେ ତାଙ୍କୁ ଆଉ ଦେଖିବାକୁ ମିଳି ନ ଥିଲା ।

ପୃଥିବୀ ସୁନ୍ଦର ଏଠି ।   ଦେହତ ନର୍ଗୀସ ତାର
ମନ ଏଠି ନୀଳ ନୀଳ ନିର୍ଜନ ଆକାଶ
ମୁଁ ଭଲପାଇଛି ତେଣୁ କେନାଲ୍‌ର କୂଳେ କୂଳେ
ଘାସ ଆଉ ଧାନକ୍ଷେତ, ମାଛରଙ୍କା ଶଙ୍ଖଚିଲ୍
ପାଣି ପଙ୍କ କଣ୍ଟା ଫୁଲ୍
ଖଜୁରୀ ଡାଳର ଡାହୁ ଚୁଇଁ ଚୁଇଁ ଫେରୁଥିବା
ପବନର ଅନାସକ୍ତ ସ୍ନେହ ଓ ନିଶ୍ୱାସ ।

# ମାର୍ଶ ସାହେବଙ୍କର ଏକ୍ସ୍‌ମାସ୍

**Marsh you fool of an Englishman**
ତୋ ସ୍ମୃତି ତ ମିଷ୍ଟିରଳ
ଲୁଣ ନଈ ମୁହାଣର ଲୁଣି ପାଣି ଜୁଆର ଫେଣରେ
ମାଛରଙ୍କା ଚଢ଼େଇର ସ୍ମୃତି ପରି ସେଦିନର ସନ୍ଧ୍ୟାର ସ୍ମୃତିରେ

ସେଦିନଠୁ ଶୀତ ଋତୁ ଫେରି ଆସେ ପ୍ରତିବର୍ଷ
ବଡ଼ଦିନ ସ୍ମୃତି
ମୁହାଣର ବାଲିଚର ଝାଉଁବଣ ହେନ୍ତାଳର ଅପନ୍ତ୍ରା ଡେଇଁ
ଉତ୍ତର ପବନ ଆସେ ଧାନର ମହକ ଧରି କୁହୁଡ଼ି ସହିତ
ଅନ୍ୟ ସେଣ୍ଟ ଜେକବିର ସ୍ତୂପର ସଙ୍କେତ ଆଣି
ଅଷ୍ଟା ସ୍ମୃତି ଜହ୍ନ ଆଲୁଅରେ ।

ତୋ ଜାହାଜ ତଳେ ସ୍ମୃତି ସେଦିନର ସୂର୍ଯ୍ୟାସ୍ତରେ ଜଳିଗଲା ପରେ
ତୁ ଏଠିକି ଫେରି ଆସୁ ସ୍ମୃତି ହୋଇ ପ୍ରତିବର୍ଷ ।
ତୋ ସ୍ମୃତି ଜମାଟ ବାନ୍ଧେ ପୁଣି ଛକ ଅନ୍ଧାରରେ ଆଜିଯାଏ
ସେ ଦିନଠୁ ଛୁଡ଼ା ହୋଇ ରହିଥିବା ବରଗଛ ପରି ଉତ୍କଳରେ ।

ଏଠି ବର୍ଷ ଗୋଟାକର ତୋଫାନ ପବନ
ଝଡ଼ଦିନ କୃଷ୍ଣଚୂଡ଼ା ହେମନ୍ତର ପ୍ରଥମ କୁହୁଡ଼ି

ଚଉଦର ଝଣ୍ଡା ପଣ—ସବୁଜ ସବୁଜ ଶ୍ୱେତ ଶରତ ନୂପୁର
ସମସ୍ତଙ୍କ ଅପେକ୍ଷା ତ ବର୍ଷଯାକ ସତେ ଅବା
ସେ ଲୋକର ଜନ୍ମଦନ ପାଇଁ
ଆଜିର ଏ ଥଣ୍ଡା ରାତ ମର୍ଣ୍ଣି ପଦ୍ମରଙ୍କୁ ।]

ସେ ଲୋକର ଛବି ବି ତ ପ୍ରତିବର୍ଷ ହଜିଯାଏ
ଥଣ୍ଡା ରାତ ଝାପ୍‌ସା କୁହୁଡ଼ିରେ
ତାର ଜନ୍ମ ମୁହୂର୍ତ୍ତର ଲଗ୍ନ ଗଲାପରେ ।
ତା ଛବି ପ୍ରଥମେ କେବେ ପଡ଼ିଥିଲା ପୃଥିବୀରେ
କେଉଁ ସ୍ଲେଟ ସହରର ସଙ୍କୀର୍ଣ୍ଣ ଗଳିରେ
ସେଦିନଠୁ ଆଜିଯାଏ ଅପେକ୍ଷା ଅପେକ୍ଷା ଖାଲି······
ସୁଣ ଛକ ଅନ୍ଧାରରେ ହଜିଥିବା ତଙ୍ଗା ଘାଟ
ହଜିଥିବା ନଈଧାର ନଣଦ ସୁଅର
ପୁଞ୍ଜିଭୂତ ବେଦନାର ବ୍ୟାଥାତୁର ନିସ୍ତବ୍ଧତା······
ଦ୍ୱିଗସ୍ତ ଅରକ ପୁଣି ତାର ଜନ୍ମ ମୁହୂର୍ତ୍ତକୁ
ତା ଦ୍ୱିଗସ୍ତ ଫେରିବାର କଲ୍ୟାଣ ଓ ଆଶୀର୍ବାଦ ପାଇଁ ।

ଲକ୍ ଗେଟ୍ ପାଖରେ ତୋ ଜମାଟ ଶୀତର ରାତ
ତୋର 'ଗ୍ରଗ୍' 'ରମ୍ ପଞ୍ଚ୍' 'ରୋଷ୍ଟ୍ ଡଙ୍କ୍'—କ୍ରିସ୍‌ମାସ୍ ତୋର
ସେ ଲୋକର ଦୟାକ୍ଷମା······ତୋ ହତ୍ୟାର ରକ୍ତାକ୍ତ ସ୍ମୃତିରେ
ତାର ଜନ୍ମ ମୁହୂର୍ତ୍ତରେ ତୋ ପ୍ରାର୍ଥନା କଣ ଥିଲା ?
କେଉଁ ସାମ୍, କେଉଁ ଗୀତ ତୋ ଆତ୍ମାରୁ ଝୁରି ଝୁରି
ମିଶିଥିଲା ସେ ରାତିର କୁହୁଡ଼ି ଓ ଝିଙ୍କାରି ଶବ୍ଦରେ ?

**You poor lonely miserable fool**
ତୁ କାହିଁକି ଆସିଥିଲୁ ଏ ରାଜ୍ୟକୁ ?
ତୋ ରାଜାର ମନ୍ଦୁଷକୁ ?   ଅବା ତୋର ବୋକାମିର ଭୁଲ୍ ଖିଆଲରେ
ତୁ ଆସି ଏଠିକି ହଠାତ୍ ବାଟ ହୁଡ଼ି ହଜିଗଲୁ
ନିଖୋଜ ନିଶ୍ଚିହ୍ନ ?

ମୁଁ ବି ତ ବୁଝେନା ନିଜେ କେଉଁ ଭୁଲ୍ କେଉଁ ଖିଆଲରେ
ମୁଁ ଅସ୍ଥିର ଖୋଜ ଖୋଜ ପ୍ରଭୁ ତୋର
ଆଜିର ଏ ଥଣ୍ଡା ତାର ନିର୍ଜନ ଘଟକୁ ।

ତଥାପି ତା କଲ୍ୟାଣର ଏ ନିର୍ଜନ ଜନ୍ମ ମୁହୂର୍ତ୍ତରେ
ମୁଁ ବଢ଼ାଏ ହାତ ମୋର ସମୟର ଏ ପାଖରୁ ମୁହାଣର ସେ ପାଖକୁ
ଖୋଜ ଖୋଜ ତୋ ନିଃସଙ୍ଗ ଏକୁଟିଆ ହାତ
ତା ଦ୍ୱିଖଣ୍ଡ ଫେରିବାର ଅଲୌକିକ ମୁହୂର୍ତ୍ତର ତୋ ପରି ମୋ
ଦୀର୍ଘ ଅପେକ୍ଷାରେ

ତା କଲ୍ୟାଣ, ଦୟା କ୍ଷମା,
ତାର ସ୍ନେହ, ତା ଆଶ୍ଳେଷ
ତା ଅଜସ୍ର ଆଶୀର୍ବାଦ ପାଇଁ ।



# କମ୍ରେଡ଼୍ ମାମୁଁ

ଆଜି ତେବେ ଅହେତୁକ ଏ ଗୀତର ଦରକାର କଣ ?
କଲମରେ କବିତାରେ ଅନ୍ୟଜଣେ ଉତ୍‌କ୍ଷିପ୍ତ କବିର *
ଯେତେ କ୍ରୋଧ ଯେତେ ଘୃଣା ବଜ୍ର ପରି ତୀକ୍ଷ୍ଣ ତୁଙ୍ଗ ମୂକ
ଆଜିତ ନିଷ୍ଫଳ ସ୍ତବ୍ଧ
ସେଥିରେ ବା ଯାଏଆସେ କେତେ ?
ସେ କବିର ମୃତ୍ୟୁପରେ ତା ସ୍ମୃତିର ବିଲୁପ୍ତ ବିଗତ ।

କମ୍ରେଡ୍ ମାମୁଁ ମୋର,
ଏହି ଅଳ୍ପ କେତେଦିନ ଭିତରେ ତ ଆପଣଙ୍କ
ସ୍ୱତୃଣା ପୃଥିବୀ
ବିଶେଷ ବଦଳି କିଛି ଯାଇ ନାହିଁ ॥
ଏବେ ବି ଭିଓଲି ବାଜେ ଗାଢ଼ ଲାଲ୍ ବ୍ରିଗେଡ୍ ଭିଲରେ
ଏବେ ବି ତ ଖରାଦିନ ପବନରେ ବିଲ ତୋଟା ଗଛର ଭିତରୁ
ଶିରିଷ ଫୁଲର ବାସ୍ନା ଭାସି ଆସେ
ଆଉ ଜଣେ କବିର* ସ୍ମୃତିରେ ।

---

* ଗୋଦାବରୀଶ ମହାପାତ୍ର ।
* କୃଷ୍ଣମୋହନ ପଟ୍ଟନାୟକ ।

କିଛି ତ ତଫାତ୍ ନାହିଁ
ଲୋକମାନେ ଠିକ୍ ଆଗ ପରି
ଆମର ଏ ସମୟର ସବୁ ସ୍କୁଲ୍ ସବୁ ଠକାମିରେ
ଜୀବନ ଚାଲିଛି ଠିକ୍ ବାଟ ଧରି—କଟକର ରାସ୍ତାରେ ଗଳିରେ
କଂଟ୍ରୋଲ ଦୋକାନରେ, ବସ୍‌ଷ୍ଟାଣ୍ଡ୍, ରେଲ୍ ଷ୍ଟେସନରେ ।
ଲୋକ ଭିଡ଼ ଠିକ୍ ଆଗପରି ।

ଶୋକ ସଭା ବିବୃତିରେ କାଗଜର ଶୋକ ସମ୍ବାଦରେ
ଆପଣଙ୍କ "କର୍ମମୟ ନିରଳସ" ଜୀବନର ସ୍ମୃତି
ଆଲୋଚନା ହେଲା ପରେ ଆପଣ ଅତୀତ ହୋଇ
ମିଶିଗଲେ ଆଧୁନିକ କବିତାର ଇତିହାସ ସେ ଯେଉଁ ପୃଷ୍ଠାରେ
ସେ ପୃଷ୍ଠା ବିରକ୍ତିକର ହେବ ନିଶ୍ଚେ
ଓଡ଼ିଆର ଏମ୍. ଏ. ଛାତ୍ର ପରୀକ୍ଷାର ପ୍ରସ୍ତୁତି ଚେଷ୍ଟାରେ ।
ଆପଣଙ୍କ କବିତାର କେତେ ଧାଡ଼ି କୋଟେସନ୍
ଶୁଣାଯିବ ହୁଏତ ବା,
ରାମଚନ୍ଦ୍ର ଭବନରେ, ବିପ୍ଳବ ମିଳନ ଅବା ଅନ୍ୟ କେଉଁ
ସାହିତ୍ୟ ସଭାରେ ।

କିନ୍ତୁ ଯେଉଁମାନେ
ଅନ୍ଧାର ରାତିର ସ୍ତବ୍ଧ ପ୍ରହରର ପୁଞ୍ଜିଭୂତ ବେଦନା ସହିତ
ଶୁଣିଚନ୍ତି ତସ୍କରର ସନ୍ତର୍ପଣ ଶବ୍ଦ ସମୟର
ଯେତେ ଜଣ ଅସହାୟ ନିଃସଙ୍ଗ ବାଟୋଇ
ନିଜ ନିଜ ଦୁଃସ୍ୱପ୍ନର ଆକ୍ରୋଶରେ ଅଭିଭୂତ ହୋଇ
ହଠାତ୍ ବା ବାଟ ପାଖ ଡ୍ରେନ୍‌ରେ ଖାଲରେ
ରହିଯିବେ ସ୍ତବ୍ଧ ସ୍ତମ୍ଭିଭୂତ.........
ସେମାନଙ୍କ କ୍ଳାନ୍ତ ଦୃଷ୍ଟି ସୀମାନ୍ତରେ
ସମୟର ଢକ୍କ ପଣଧରେ

ଆପଣଙ୍କ କୃପାଣିର ତୀକ୍ଷ୍ଣ ମୁନ
ଆକଣ୍ଠ ଗରଳ ପାନ ଆପଣଙ୍କ
ଆପଣଙ୍କ ଶୋଣିତ ସେ ହ୍ରଦ
ରହିଥିବ ଚିରଦିନ ଜୀବନର ଅଶାନ୍ତ ପ୍ରେତାତ୍ମା
ଆପଣଙ୍କ ଗୀତ ଥିବ
ନିଃସଙ୍ଗ ବେଦନାତୁର ମଣିଷର ରକ୍ତ କଣିକାରେ
ମୁ ଜ୍ୱର ଏ ପିପାସାରେ ଜ୍ୱଳିବାର ନିର୍ମମ ତୋଫାନ ।



# ସାମ୍ନାରେ ଶୀତ ରାତ

ସାମ୍ନାରେ ଶୀତ ରାତ ଅସରନ୍ତ ଅନେକ ମୁହୂର୍ତ୍ତି
ଅସରନ୍ତ ଶୀତ ରାତ ଆଦଗନ୍ତ ସମସ୍ତ ସମସ୍ତ
ନିରର୍ଥକ ଏ ଯାତ୍ରାର ପୁଞ୍ଜିଭୂତ ଗ୍ଲାନି ଅବସାଦ ।
ପବନର ଥଣ୍ଡା ହାତ ପୃଥିବୀର ଅନ୍ଧାର ଭିତରେ
ମୋ ମନରେ ସ୍ୱପ୍ନ ଆଣେ କାହିଁକି ବା ଜନ୍ମ ଓ ତାରାର !

ଜନ୍ମ ଓ ତାରାର ସେତ କେଉଁ ଅଖାତର ସ୍ମୃତି
ଜନ୍ମ ଓ ତାରା ତ କେଉଁ ହଜିଥିବା ଦିଗନ୍ତରେ ୀ
ଲାବଣ୍ୟବତୀର ନଦୀ । ସ୍ମୃତିର ଅନ୍ଧାର ତଳେ
କେତେ ମୁହଁ ହସର ବସ୍ତୁସ୍ତୁ ।

ତା ଆଖିର ଅନ୍ଧାରରେ ରାତ ମୋର ବିଭ୍ରାନ୍ତ ବ୍ୟଥିତ
କକ୍ଷଚ୍ୟୁତ ଯେତେ ତାରା ତା ହସରେ କବିତାର ଅଭ୍ୟନ୍ତ ଭିତରେ ।
ଏ ଶୀତ ରାତର ଥଣ୍ଡା ଦେହତଳେ ଏ ପୃଥିବୀ
ଯେତେବେଳେ ନିର୍ବାକ ନୀରବ
ବହୁତ ମୃତ୍ୟୁର ପରେ ଅନ୍ୟ ଏକ ମୃତ୍ୟୁ ପାଇଁ
ଏ ହୃଏତ ସମସ୍ତର ପ୍ରକ୍ଷେଣ ନଖ ଦାନ୍ତର ଆଘାତ ।



# ବସନ୍ତ ସହିତ ଆସେ

ବସନ୍ତ ସହିତ ଆସେ ବାହାଘର ଉଥି ବ୍ୟାଣ୍ଡ୍ ବାଜା
ନିମନ୍ତ୍ରଣ କାର୍ଡ଼ ଆସେ, ମାଇକ୍‌ର ଚାଢ଼ଯାକ ଗୀତ
ବସନ୍ତ ସହିତ ଆସେ ଆମ୍ବକଷି କଣ୍ଠ ସ୍ବଣପାଖେ
ମହୁମାଛି ଡେଣାତଳେ ଆସ୍ତେ ଆସ୍ତେ ଡାରୁଥିବା
ଫାଲ୍‌ଗୁନର ଖବର ।

ତା ଦେହର ବସନ୍ତରେ ରଙ୍ଗ ଧରେ କୃଷ୍ଣଚୂଡ଼ା ଫୁଲ୍
ତା ଆଖିର ଆକାଶରେ ରୂପ ପାଏ ପୃଥିବୀର ପ୍ରାଚୀନ ସମସ୍ତ
କୁରୁବକ କଦମ୍ବର ସ୍ବପ୍ନ ଫେରେ ତା ଓଠର ବସନ୍ତ ହସରେ
ମୋ ସତ୍ତ୍ୱାର ସୀମାନ୍ତରେ ସେତେବେଳେ ପଡେ ଝଡ଼
ମୋ ଦେହର ଦିଗନ୍ତରେ ସେତେବେଳେ ସୂର୍ଯ୍ୟାସ୍ତର ବସନ୍ତ ବିଦାୟ ।

୦୦

# ଏସ୍‌ରାଜ ଖ୍ୱାଓଲନ୍

ଏସ୍‌ରାଜ ଖ୍ୱାଓଲନ୍ ସିତାର ତାରରେ
ଚମ୍ପାକଢ଼ ଆଙ୍ଗୁଠିରୁ ଝରି ଆସେ କହ୍ଲାରାଢ
ଫୁଲର ଝରଣାଁ
ମୂର୍ଚ୍ଛନାର ଏ କୁହୁକ ଘାରି ହଏ ଦେହ ମନ
ସବୁ ଫୁଲ, ସବୁ କଢ଼, ସବୁ ମୁହଁ ଦେଖାଯାଏ
ସ୍ୱପ୍ନାଭ ସୁନ୍ଦର
ମୂର୍ଚ୍ଛନାର ଏ କୁହୁକ ଚମ୍ପାକଢ଼ ଆଙ୍ଗୁଠିରୁ
ଖ୍ୱାଓଲନ୍ ସିତାର ତାରରେ ।

ଖ୍ୱାଓଲନ୍ ସିତାରରେ କିନ୍ତୁ ଯେବେ ଚୁପ୍ ହୁଏ,
ଶବ୍ଦର ତରଙ୍ଗ ସବୁ
ସ୍ଥିର ରହେ ଆଙ୍ଗୁଠିର ଗଣ୍ଠ
ସେତେବେଳେ ଥିଏଟର, ନାଚଖାନା ଆସରର ମଣିଷ ଭିତରେ,
ପୃଥିବୀ ପାଲଟେ ପୁଣି ଝାଳ ନାଳ ଚିତ୍କାରର
ନିର୍ଲଜ ଉଲଗ୍ନ ଗ୍ରହ
ଏସ୍‌ରାଜ ଖ୍ୱାଓଲନ୍ ସିତାରର ତାର ଚୁପ୍ ହେଲେ ।

ମୁଁ ଫେରିଚ ଯେତେଥର ନାଚଗୀତ ଆସରରୁ
ମୂର୍ଚ୍ଛନାର ମୁଖା ପରେ ଏ ସମ୍ଭାର ଅସ୍ଥି କଙ୍କାଳକୁ

ସ୍ଖଲବାର କ୍ଳାନ୍ତ ମୋର ସାମ୍ନାର ସମସ୍ତ ଢେଉଁ
ଜମିଯାଏ ଦୂରକୁ ଦୂରକୁ
ଅନ୍ତହୀନ ଗଢ ଧରି ଏ ପୃଥିବୀ ଯେବେ ଦିଶେ
ଦିଗନ୍ତହୀନ ଧୂସର ପାଣ୍ଡୁର
ସେତେବେଳେ ତା ସ୍ମୃତିରୁ ଦିଗନ୍ତରେ ବିଷଣ୍ଣ ଗୋଧୂଳି
ମୋ ପାଖେ ଫେରାଇ ଆଣେ ତା ସତ୍ତାର କୁହୁକରୁ
ମୋ କ୍ଳାନ୍ତ ସତ୍ତ୍ୱରେ ପୁଣି ଫାଲ୍‌ଗୁନର ଫୁଲର ମୂର୍ଚ୍ଛନା ।



# ସନେଟ୍‌ର ସେ ସ୍ତ୍ରୀ ଲୋକର......

ସନେଟ୍‌ର ସେ ସ୍ତ୍ରୀ ଲୋକର କଳା ବାଳ ଗାଢ଼ କଳା ଆଖି
ଅଶାନ୍ତ ସମୁଦ୍ର ଢେଉ ପାରି ହୋଇ ହଜିଥିବା ଦୂର ଶତାବ୍ଦୀରୁ
ମୋର ଏ ଅନ୍ଧାର ଗୂଢ଼ ଗହ୍ୱରକୁ ଫେରିଆସେ
ସେ ଯୁଗର ସେ କବିର ଅନ୍ତର୍ଦାହ ନେଇ ।

ମୋର ଏହି ଅନ୍ଧାରର ନିଭୃତ ନିଃସଙ୍ଗ ମନ
ଯେତେ କ୍ଷୋଭ, ଯେତେ କ୍ଷତ ଯେତେ ମୃତ୍ୟୁ
ପୃଥିବୀରେ ଭଲପାଇବାର
ତୀର ତିକ୍ତ ମନ୍ତ୍ରଣାର ଅନୁତାପ ଅନୁଭବ ଧରି
ଆଜି ଏତେ ଖରାତୁର ।

ତଥାପି ବି ଏ ପୃଥିବୀ କୃଷ୍ଣଚୂଡ଼ା ପଳାସ ଫୁଲରେ
ଫାଲ୍‌ଗୁନର ପବନରେ ଝଡ଼ା ପତ୍ର ଆମ୍ବ ବଉଳରେ
ଏତେ ସ୍ନିଗ୍ଧ ସୁନ୍ଦର ଓ ଏତେ ରୂପବନ୍ତୀ ।

ସେ ରୂପର ଆଚ୍ଛନ୍ନତା ଖଦ୍ଧାତୁର ମୋ ମନର ନଷ୍ଟ ପୃଥିବୀରେ
ସେ ଚେତଶୁ ମୋ ପାଇଁ ରହେ ବନଲତା ସେନ୍ ପରି
ଯତ୍ନମାନ ମେ ସତ୍ତ୍ୱର ଏକ ସ୍ଥିର ନିର୍ଭୁଲ ମୁହୂର୍ତ୍ତ
ସବୁ ଭଲପାଇବାର ପୁଞ୍ଜିଭୂତ ବେଦନା ଭିତରେ
ପୃଥିବୀର ଏ ଦେହରେ ପ୍ରତିବର୍ଷ ଫେରୁଥିବା
ବସନ୍ତର ଉନ୍ମେଷିତ ଫାଲ୍‌ଗୁନର ଫୁଲର କୁହୁକ ।



## ଫାଲ୍‌ଗୁନର ଫୁଲ ସୁଖେ......

ଫାଲ୍‌ଗୁନର ଫୁଲ ସୁଖେ ଧାନ କଟା ସରିଗଲା ପରେ
ଧୂସର ଶ୍ରୀହୀନ କ୍ଷେତ ପଡ଼ିରହେ ; ବାଦାମି ରଙ୍ଗର
କଣ୍ଟାଗଛ ଘାସ ସବୁ
ଖରାରେ ନିଶ୍ଚଳ ସ୍ଥିର
ଝାଞ୍ଜିର ଭଉଁସି ପୁଣି ବାସ୍ତୁହରା କାନ୍ତାର କାନ୍ଦଣା
ସ୍ୱରବୃର କଣ୍ଠ ରଖେ ଅବସନ୍ନ କ୍ଳାନ୍ତ ଦପହର ।

ତା ଦେହର ରଙ୍ଗଧରି ପୁଣି କେବେ ଫେରିବ ଫାଲ୍‌ଗୁନ
ତା ମନର କୃଷ୍ଣଚୂଡ଼ା ତା ନିଃଶ୍ୱାସ ସୁଧାତମାଲର
ମହକ ଓ ରଙ୍ଗ ଧରି ମୋ ପାଇଁ ପୃଥିବୀ ହେବ
ବିଶ୍ରାମର ନୀରବ ମୁହୂର୍ତ୍ତ
ତା ବେଣୀର ଅନ୍ଧାରରେ ସମୟର ଦୁର୍ନିବାର ରଥ
ମୁହୂର୍ତ୍ତିକ ସ୍ଥିର ହେବ
ମୋର କ୍ଳାନ୍ତ ଚେତନାରୁ ନିଭିଯିବ ନିରଙ୍କୁଶ କାଳ ଓ ଅତୀତ ।



## ଏଠି ଭୋର ପବନରେ········

ଏଠି ଭୋର ପବନରେ ଡଳେ ଝରେ କଦମ୍ବର ଫୁଲ
କାକରରେ ଓଦା ଘାସ ଶୁଖିଲା କେନାଲ୍ କୂଳ ଏପାଖ ସେପାଖ
ଦୂରରେ ନଈର ପଠା ଆଚ୍ଛନ୍ନ କୁହୁଡ଼ି ତଳେ
ଏକୁଟିଆ ଝାପ୍‌ସା ତାଲଗଛ
ଏ ମୋର ନିଃସଙ୍ଗ ମନ ସକାଳର ଏଇ ପବନରେ
ଖବର ବୁଲିବା ବାଟ ଖୋଜି ଖୋଜି ହଜିଯାଏ
ଦିଗ୍‌ବଳୟ ଆଡ଼େ ।

ଛଣ ଏ ଛପର ଧୋଇ ବାଦାମି ବଲର ରଙ୍ଗ ଛୁଇଁ ଛୁଇଁ
ଆଜି ଦିନସାରା
ଏ ଖବର ତ କମେ ପିବ ଚଢ଼େଇ ଗୀତରେ ହଜି
ଦିଗ୍‌ବଳୟ ସେ ପାଖର ତାରା ଓ ଚାନ୍ଦରେ
ତା ପରେ ପ୍ରସ୍ତୁତ ମୋର ନିଃସଙ୍ଗ ରାତର ପାଇଁ
କୁହୁଡ଼ି ଓ କାକରର ନିଃଶବ୍ଦ ପ୍ରହର ସବୁ······
ଆଖିରେ ନିଃସଙ୍ଗ ନିଦ ସାମୟିକ ନିଃସଙ୍ଗ ମୃତ୍ୟୁରେ ।

ପ୍ରତିଦିନ ଏ ମୃତ୍ୟୁରୁ ଜନ୍ମ ନିଏ ନିଃସଙ୍ଗତା
ଅନ୍ୟ ଏକ ଅରୂପ ଅପେକ୍ଷା
ପୃଥିବୀର ଅନ୍ୟ ଏକ ଭଲପାଇବାର ।

॥ କବିତା ସମଗ୍ର-'୨୪ ॥

ଏ ମୋର ନିଃସଙ୍ଗ ମନ
ଖବର ବୁଲିବା ବାଟ ଖୋଜି ଖୋଜି ବନରୁ ବନକୁ
ଅନ୍ଧାରର ପିବା ବାଟ ଖୋଜି ଖୋଜି ତାରାରେ ତାରାରେ
ଆଜି ୪ଟେ ଇତସ୍ତତ
ସେ ଅବୁଝ ଅପେକ୍ଷାରେ
ସେ ଅବୁଝ ଭଲପାଇବାର
ଯୁକ୍ତି ଆଉ ସମାଧାନ ପାଇଁ ।
ସେ ମୁହୂର୍ତ୍ତି କେବେ ପୁଣି ?
ମୋ ମୁଖର ବସ୍ତୁତ ବା
ତା ସତ୍ତ୍ୱାର କେଉଁ ପ୍ରଶ୍ନ କେଉଁ ଅନ୍ଧାରରେ ?



# ଆହତ ଅଶାନ୍ତ ଦୃଷ୍ଟି

ଆହତ ଅଶାନ୍ତ ଦୃଷ୍ଟି ଦିନଯାକ ସଂଘର୍ଷର
ଆଘାତ ଓ ଅବର୍ଜନା ପରେ
ଚାହେଁ ଯେବେ ନିରାଶ୍ରୟ ଶ୍ରାନ୍ତ କ୍ଳାନ୍ତ ଦୂର ଆକାଶକୁ
ସନ୍ଧ୍ୟାର ନିର୍ଜନ ତାରା ଆକାଶରେ ଶାନ୍ତ ସ୍ଥିର ଅନିମେଷ ଜ୍ୟୋତିଃ
ସେତେବେଳେ ତା ସତ୍ତ୍ୱର ରକ୍ତାକ୍ତ କ୍ଷତରେ
ଅକସ୍ମାତ୍ ଶାନ୍ତ ଆସେ
ଆକାଶର ଆଦିଗନ୍ତ ବ୍ୟାପ୍ତି ଓ ବିସ୍ମୟ ।

ମୋ ନିଃସଙ୍ଗ ଦିନାନ୍ତର ଯେତେ କ୍ଷୟ କ୍ଷୋଭ ଯେତେ
ଅପମାନ ଅଣ ସଫଳତା
ତା ଆଖିର ଅନ୍ଧାରରେ ସାନ୍ତ୍ୱନାର ନିଶବ୍ଦ ସ୍ପର୍ଶରେ
ଆଜି ଯେବେ ଶାନ୍ତ ହୋଇ ଶୋଇ ପଡ଼େ
ହେ ଆକାଶ ହେ ମୋର ପୃଥିବୀ
ତୁମର ଦେହରେ ରହୁ ଚିରନ୍ତନ ତା ଦେହର ଧ୍ୱନି ଓ କବିତା
ତା ସତ୍ତ୍ୱର ସଂଳାପରେ ବସନ୍ତର ଗୀତ ରହୁ
ମୋ ଧୂସର ଦିଗନ୍ତର ସ୍ମୃତିର ସେ ପାଖେ
ମୋ ପଣ ବ୍ୟଥିତ ବନ୍ଧୁ ପଥିକର ସନ୍ଧ୍ୟା ତାରା
ସମସ୍ତର ବିସ୍ମୃତିରେ ଆଖି ତାର ବିସ୍ମୟର ସାନ୍ତ୍ୱନାର
ଜୀବନର ନିନିମେଷ ଜ୍ୟୋତି ।



# ତା ଆଖିର ତୁଳନା ତ

ତା ଆଖିର ତୁଳନା ତ ସକାଳ ନୀଳ କଇଁ ନୁହେଁ

ନୀଳ କଇଁ ପାଖୁଡ଼ାରେ
ମସୃଣ ମୁହୂର୍ତ୍ତର ସ୍ତୂପ ଆକାଶର
ପାଣିର ଅଳସ ଢେଉ
ପବନ ଓ ଘାସର କବିତା ।

ତା ଓଠର ରଙ୍ଗ ନୁହେଁ ଗାଢ଼ଲାଲ ସନ୍ଧ୍ୟାର ଆକାଶ ।

ସନ୍ଧ୍ୟାର ଆକାଶ ସେତ
ଝରକା ଭିତରୁ ଦୃଶ୍ୟ ଆସନ୍ନ ରାତିର
ନିଦରେ ନିଶ୍ଚିହ୍ନ ହୋଇ ନିଭିଯିବା ନୀରବ ବିଶ୍ରାମ ।

ତା ଦେହ ତ ଚଇତର ଅବସନ୍ନ ଅପରାହ୍ନ ପରି

ଆସନ୍ନ ଖରାର ରୁକ୍ଷ ତାତଭରା ସମସ୍ତ ସ୍ୱପ୍ନରେ
ନିଶବ୍ଦ ନିରବଚ୍ଛିନ୍ନ ଭାସିଯାଏ ଯେତେବେଳେ
ମୋ ଦେହର ଉପସର୍ଗ ସବୁ
ତା ଦେହ ତ ଚଇତର ଉପହାର ଶିଥିଳତା ଧରି
ମୋ ମୃତ୍ୟୁ ମୋ ବିଲୁପ୍ତିରେ ଭରିଦିଏ ଭଲପାଇବାର
ଝଡ଼ାପତ୍ର ଭଙ୍ଗୀରେ ଝଡ଼ିଯିବା ଗୀତର ମୂର୍ଚ୍ଛନା



## ଦେହର ନିର୍ଲଜ ଭୋକ

ଦେହର ନିର୍ଲଜ ଭୋକ ଭିତରେ ତ ନଷ୍ଟ ହୁଏ
ମନ ଆଉ ଆତ୍ମାର ପୃଥିବୀ
ଯେଣୁ ଏ ଦେହରୁ ଜନ୍ମ ପୁଣି ପାଏ ଅନ୍ୟ ଦେହ
ତା ପରେ ତ ସମସ୍ତର ନିଷ୍ଠୁର ଜୀବନ ତୃଷ୍ଣା
ଅର୍ଥ ଆଉ ବ୍ୟବସାୟ ପରିବାର ରୋଜଗାର ଧନ
ମନର ତ ମୃତ୍ୟୁ ହୁଏ, ରହିଯାଏ ଲାଳସାର କ୍ଷୁଧା ।
ବାରମ୍ବାର ଫେରି ଏ ଦେହକୁ ଅନ୍ୟ ଦେହ ପାଇଁ ।

ମୋ ଦେହରେ ସେ ଭୋକର ଅନୁଭୂତି ନିଷ୍ଠୁର ଲାଳସା
ଯେତେ ତୃପ୍ତି ପାଇଲେ ବି ପୁଣି ଫେରେ ଉତ୍ତ୍ୟକ୍ତ ନିର୍ଲଜ
ଅନ୍ୟ ଏକ ଦେହ ପାଇଁ ।   ଜୀବନର ଯନ୍ତ୍ରଣା ସହିତ
ନିର୍ଲଜ ଏ ଭୋକର ବା ଶେଷ କାହିଁ ପରିତୃପ୍ତି କାହିଁ ?

ନିର୍ଲଜ ମୋ ଏ ଦେହର ଭୋକ ରହୁ ତା ଠାରୁ ଦୂରରେ
ମୋର ନଷ୍ଟ ଆତ୍ମା ମନ ପୁଣି ଯଦି ଫେରିଯାଏ ସ୍ୱାସ୍ଥ୍ୟ କେବେ
ସେଦିନ ମୋ ଭଲ ପାଇବାର
ସାର୍ଥକ ମୁହୂର୍ତ୍ତ ସବୁ ଆକାଶର ତାରାରେ ତାରାରେ
ପୃଥିବୀର ସବୁ ଘାସ ସବୁ ନଈ ସବୁ ଋତୁ ସବୁ ସଙ୍ଗୀତରେ

ତା ମନ ଓ ଆତ୍ମାର ପୃଥିବୀକୁ ଫେରି ଯିବ
ତା ଦେହରେ ବହନ୍ତର ଟବୁ ଫୁଲ ସବୁ ହସ ସବୁ ବସନ୍ତକୁ ।

ତା ଦେହର ବସନ୍ତ ବା ଯଦି କେବେ ବିପର୍ଯ୍ୟସ୍ତ ହୁଏ
ଅନ୍ୟ ଦେହ ଅନ୍ୟ କ୍ଷୁଧା ଅନ୍ୟ ସ୍ନେହ ଅନ୍ୟ ଲାଳସାରେ
ତଥାପି ଏ ମୁହୂର୍ତ୍ତରେ ତା ଦେହର ଅନାସକ୍ତ ବର୍ଷା ଓ ବସନ୍ତ
ରହିଥିବ ମୋ ସ୍ମୃତିରେ ଚିରନ୍ତନ ପୃଥିବୀର କ୍ଷମାଶୀଳ ଦେହ ।



# ଏ ନାଲି ମାଟିର ରାସ୍ତା

ଏ ନାଲି ମାଟିର ରାସ୍ତା କେତେ ଦୂର ଯାଏ କେତେ ଦୂର ?

କେନାଲର କୂଳ ଧରି ସାମ୍ନାର ପୋଲ ପାରି ହୋଇ
ସେ ପାଖ କେନାଲ ଦାଢ଼ ଧରି ପୁଣି
ଏ ନାଲି ମାଟିର ରାସ୍ତା ଛୁଇଁ ଛୁଇଁ ଗାଆଁ ଘର
ଏ କଣ ଶେଷରେ ଯାଏ ନିଶ୍ଚିହ୍ନ ନିଖୋଜ ହୋଇ
ଘାସ ଆଉ ଗୁଡ଼୍କଙ୍କ କଣ୍ଟାବଣ ସମୁଦ୍ର ବାଲିରେ ?
ତା ପରେ ସମୁଦ୍ର ଢେଉ ଅସୀମ ଅତଳ ପାଣି
ଯେତେ ଦୂର ଯାଏ ଆଖି ପାଏ ?

ନିର୍ଜନ ଏ ବାଟରେ ତ ବହୁତ ବାଟୋଇ ଦୂର ସମୁଦ୍ର ଆଡ଼କୁ
ଆଖିରେ କେବଳ କ୍ଲାନ୍ତି ପିଠିରେ ବହୁତ ବୋଝ
ମନରେ ତ ସମୁଦ୍ରର ଅଦମ୍ୟ ପିପାସା
ଏ ନାଲି ମାଟିର ମୋହ ଏତେ ବାଟ ଚାଲିବାର କ୍ଲାନ୍ତି ସତ୍ତ୍ୱେ
ରକ୍ଷିତ ଆଚ୍ଛନ୍ନ କରି ମସ୍ତିଷ୍କର ସବୁ ସ୍ନାୟୁ ରକ୍ତର କଣିକା ।
ତଥାପି ନିର୍ଜନ ବାଟ—ସେମାନେ ତ ସମସ୍ତେ ଏକାକୀ ।

ଏ ବାଟରେ ଯିବା ପାଇଁ ଏ ମୋର ଉତ୍ସୁକ ମନ କାହା ଅପେକ୍ଷାରେ ?
କାହାର ଅସ୍ପଷ୍ଟ ଛାଇ ଏଠି ମୋର ପାଖେ ପାଖେ
ଗୁଡ଼କଙ୍କ କଣ୍ଟାଘାସ ବାଲି ନିର୍ଜନରେ
ନିଶ୍ଚିହ୍ନ ନିଖୋଜ ହୋଇ ମୋ ସହିତ ହଜି ଯିବା ପାଇଁ ?

ତା ପରେ ତ କୂଳହୀନ ଅତଳ ସମୁଦ୍ର ।



# ନିଭୃତ ଏକାନ୍ତ ମୋର

ନିଭୃତ ଏକାନ୍ତ ମୋର ଏ ମନର ପୃଥିବୀର
ବିସ୍ମୃତ ତ ହେଲଣି ବହୁତ
ବହୁତ ବସନ୍ତ ଆସି ଏଠି ତ ଯାଇଛି ମରି
ବର୍ଷା ମେଘ ଝଡ଼ ଓ ଅନ୍ଧାର
ବହୁତ ନଈର ସୁଅ ଏଠି ତ ଯାଇଛି ହଜି
ନିର୍ଜନ ମୋ ଆକାଶ ଦେହରେ
କକ୍ଷଚ୍ୟୁତ ତାରାର ଆର୍ଯ୍ୟକ ଗତି
ଯାଇଛି ନିଶ୍ଚିହ୍ନ ହୋଇ
ନିର୍ଜନ ଏ ପୃଥିବୀରେ ମୃତ୍ୟୁର କେବଳ ଛାଇ
ଅକଥିତ ମୃତ୍ୟୁର ବେଦନା ।

ସେ ମୃତ୍ୟୁର ଛାଇ ଜମେ ପୃଥିବୀର ଛାତି ପରେ
ଗୋଧୂଳି ତ ନୀରବ ଧୂସର
ଧୂସର ଗୋଧୂଳି ତଳେ
ଛାତିର ସ୍ପନ୍ଦନ ଧରେ ସମସ୍ତର ଅବିଶ୍ରାନ୍ତ ଗତି
ସେଥିରୁ ନିସ୍ତାର ନାହିଁ
ମୃତ୍ୟୁରୁ ନିସ୍ତାର ଆସେ ମୃତ୍ୟୁରେ କେବଳ ।

ଆଜି ତେଣୁ ତା ଦେହର ରଙ୍ଗ ଯେବେ ମ୍ଳାନ ହୋଇ ଆସେ
ତା ଓଠର ଚନ୍ଦ୍ର ଯେବେ ନିଭିଯାଏ ନିଷ୍ପ୍ରଭ କରୁଣ

ହେ ପୃଥିବୀ ହେ ମୋର ଆକାଶ
ତୁମର ବିମୁକ୍ତି ପାଇଁ ମୋର ଆଜନ୍ମ ଅପେକ୍ଷା
ଶେଷ ହେଉ ଶେଷ ହେଉ
ତାର ଭଲ ପାଇବାର ଅହେତୁକ ନିଷ୍ଫଳ ସ୍ମୃତିରେ ।

ବସ୍ତୁତ ମୃତ୍ୟୁର ପରେ
ମୃତ୍ୟୁରୁ ନିସ୍ତାର ଆସେ ମୃତ୍ୟୁରେ କେବଳ ।



|| କବିତା ସମସ୍ତ-୧୩୨ ||

# ସେ ରହେ ରକ୍ତରେ ମୋର......

ସେ ରହେ ରକ୍ତରେ ମୋର ଗୋପନରେ
ଏକ ମୃଦୁ ଗୀତର ମୂର୍ଚ୍ଛନା
ସହରର କାର୍ ବସ୍ ଲୋକ ଗହଳରେ
ସେ ରହେ ମୋ ଚେତନାରେ ଏକ ମୃଦୁ ଉତ୍ତେଜନା ପରି ।
ଏ ପୃଥିବୀ ଯେତେବେଳେ ଲୁଚେ ଆଜି ଭୀତ ତ୍ରସ୍ତ
ମହା ପରିନିର୍ବାଣର ଆସନ୍ନ ଭୟରେ
ସେ ରହେ ମୋ ସତ୍ତାତଳେ ଜିଦ୍‌ଖୋର
ଜୀବନର ଏକ ସୂକ୍ଷ୍ମ ପ୍ରଗଲ୍‌ଭ ଝରଣା ।

ଆମର ଏ ସମସ୍ତର ଜୀବନର ଆତଙ୍କିତ ସ୍ଥିତି
ହୁଏତ ବା ଅକସ୍ମାତ୍ କେଉଁ ମୁହୂର୍ତ୍ତରେ
ହଠାତ୍ ନିଶ୍ଚିହ୍ନ ହୋଇ ମିଶିଯିବ ଧୂଆଁରେ ବାଷ୍ପରେ ।

ସେ ମୃତ୍ୟୁର ଉତ୍ସାରର ମଣିଷର ମୁହ୍ୟମାନ ସ୍ଥିତି
ମୂର୍ଚ୍ଛିତ ଜର୍ଣ୍ଣବ ଆଜି ଯେଉଁ ଅପେକ୍ଷାରେ
ଅତର୍କିତ ସେ ମୁହୂର୍ତ୍ତ ଯାଏ
ତା ସତ୍ତା ନିଖୁଣ ରହୁ
ଜୀବନର ସୁଅ ରହୁ ପ୍ରଗଲ୍‌ଭ ଝରଣା ପରି
ତା ରକ୍ତରେ ତା ହସରେ ତା ଦେହର ରଜନୀଗନ୍ଧାରେ ।



# କ୍ୟାମ୍ପସ ବ୍ଲୁଜ୍

( Campus Blues )

ଏପ୍ରିଲ୍ ଖରାର ତାତ କଂକ୍ରିଟ୍ ଛାତରେ
ବାସ୍କେଟ୍ ବଲ୍ ପଡ଼ିଆର ଚଟାଣରେ
କ୍ରିକେଟ୍ ପଡ଼ିଆ ଘେରା ତାରବାଡ଼ କଣ୍ଟାର ମୂନରେ
ଯଦଚ ବା ସ୍ୱଚ୍ଛ ଅଧ ବାରଟା ସେ ପାଖୁ
ଟାଇଫଏଡ୍ ତାତ ପରି ଏପ୍ରିଲ୍ ଖରାର ତାତ ।
ଲଗି ରହେ ବୋଗବର ବ୍ରୋଞ୍ଜ୍ ଘୋଡ଼ା
କୃଷ୍ଣଚୂଡ଼ା ଗୁଲ୍ ମୋହରର ସୁନାଖି ଫୁଲରେ ।
ଷଣ୍ଢ ପଞ୍ଚ ଜନ୍ମ ତଳେ ହଷ୍ଟେଲ୍ ସବୁ ଚୁପ୍‌ଚାପ୍
ବୋର୍ଡ଼ର୍ ସବୁ ନଘୋଡ଼ ନଦରେ ।

ସେସନ୍ ସରି ଆସିବାର କରୁଣ ଏ ବଦାସ୍ୱର
ନିର୍ଜନତା ଆଜି
ସବୁ ବର୍ଷ ଏପ୍ରିଲ୍‌ର ନିର୍ଜନତା ପରି
ଉତ୍ସୁକ ବନ୍ଧୁତ ମନ
ଉତ୍ସୁକ ବନ୍ଧୁତ ଆଖି ସାମ୍ନାରେ
ଅକଥିତ କେତେ ଆଶା
ଏ ଜନ୍ମର ଛାଇପରି
ରୂପହୀନ ଦେହହୀନ ସମ୍ଭାବନା ବନ୍ଧୁତ ସ୍ୱପ୍ନର ।

ସେମାନେ ଏକାଠି ବୋଧେ ଏକଜୁଟ ହୋଇ
ଏପ୍ରିଲ୍‌ର ଏ ତାଢରେ ଶବସ୍ଥାନ ଶୋଭାଯାତ୍ରା କରି
ଉଦ୍ୟତ ଫାଟକ ଡେଇଁ ଯିବା ପାଇଁ
ସେପାଖ ରାସ୍ତାକୁ

ସେ ରାସ୍ତା ତ କ୍ୟାମ୍ପସ୍ ବାହାରେ
ଏକୁଟିଆ ଟ୍ରକ୍ କେବେ, ଏକୁଟିଆ ସ୍କୁଟର ବା କାର୍
ଗୀତଗାଇ ଫେରୁଥିବା ଟ୍ରଲିବାଲା
ଆବାଜ୍ କେବେ ପୁଲିସ୍ ସିଟିର ।
ବିଭିନ୍ନ ଅଦ୍ଭୁତ ଶବ୍ଦ...... ...
ଅନ୍ୟ ଏକ ପୃଥିବୀର ପ୍ରତିଧ୍ୱନି ପରି

ଏ କରୁଣ ମୁହୂର୍ତ୍ତ ତ ସମସ୍ତରୁ ଛିଣ୍ଡି ଥିବା
ଏ କ୍ଷୁଦ୍ର ଭଗ୍ନାଂଶ ଯେପରି........
ଲାଇବ୍ରେରି, କରିଡ଼ର, ବ୍ଲାକ୍‌ବୋର୍ଡ଼, ହଷ୍ଟେଲ ବିଛଣା ।
ପୁରୁଣା ପୋଷାକ ପରି ।
ସାମ୍ନାରେ ଅଦେଖା ରାସ୍ତା
ହାତଠରୁ ଅନ୍ୟ ଏକ ଅଦେଖା ହାତର ।
ସେମାନଙ୍କ ଦଳବଦ୍ଧ ପ୍ରସେସନ୍ ଭିତରେ ତ
ଏପ୍ରିଲ୍‌ରେ
ପ୍ରତିବର୍ଷ ଏକା ଏକା ସେମାନେ ସମସ୍ତେ ।

ମୋର ହଠାତ୍ ମନେ ହେଲା
ଏମାନଙ୍କ ସହିତରେ ମୁଁ ବି ଅନ୍ୟଜଣେ
ବହୁତ ପୁରୁଣା ବନ୍ଧୁ ବର୍ଷ ତଳୁ ଏପ୍ରିଲ୍ ମାସରୁ
ଟେନିସ୍ ପଡ଼ିଆ ଘାସ ଝୁରୁଥିବା ଜହ୍ନର ଛାଇରୁ
ଚାଲି ଚାଲି ଆସୁଛି ମୁଁ
ସରିଥିବା ସେସନ୍‌ରୁ, ସରି ସରି ଆସୁଥିବା ବି: ଜେ: ବି ର ଏପ୍ରିଲ ତାଢକୁ ।

ଫାଟକ ସେପାଖ ଯାତ୍ରା ସବୁଦନ ଫାଟକ ସେପାଖେ ।

ଏପାଖେ ମୋ ସମସ୍ତର ଶ୍ରେଷ୍ଠ ଶ୍ରେଷ୍ଠ ଭଗ୍ନାଂଶ ସଞ୍ଚିତ

ମୋ ସତ୍ତାରେ କଂକ୍ରିଟ୍......ଏପ୍ରିଲ୍ ଖରାର ତାତ

ମେ, ଜୁନ୍, ଖରାଛୁଟି

ଟାଇଫଏଡ୍ ତାତ ପରି ଅସରନ୍ତି ସମସ୍ତର

ଅନିଶ୍ଚିତ ବର୍ତ୍ତମାନ

ଭବିଷ୍ୟତ ବିସ୍ମାନ ଅତୀତ ।

## ହାତ

କ୍ଲାସ୍‌ମେଟ୍ ଦୋସ୍ତମୋର
ତା ହାତ ତ ଥିବା କଥା ଅନ୍ୟ କେଉଁ ଲୋକର ପକେଟ୍‌ରେ
ଆଜି କିନ୍ତୁ ସକାଳର ସମାଜରେ ପ୍ରଥମ ପୃଷ୍ଠାରେ
ଛବି ତାର—ହାତ ତାର ନିଜ ପକେଟ୍‌ରେ ।

ଅତୀତରେ ହାତ ତାର ରହୁଥିଲା ବ୍ୟସ୍ତ କିନ୍ତୁ ସବୁଦିନେ ପ୍ରାୟ ସବୁବେଳେ
ଇଉନିଅନ୍ ଇଲେକ୍ଟ୍ ପାଇଁ ବକ୍ତୃତା ଦେଲା ବେଳେ
ଅବା କାହା ପକେଟ୍‌ରୁ କଡ଼ାପାନ ସିଗାରେଟ୍ ବାହା କଲା ବେଳେ
ହ୍ୟାମଲେଟ୍ ସଲିଲୋକି ଆବୃତ୍ତି କରିଲାବେଳେ
ଏମିତିକା ହାତ ତାର ବ୍ୟସ୍ତବ୍ୟସ୍ତ ରହୁଥିଲା ସବୁବେଳେ—ପ୍ରାୟ ସବୁବେଳେ,
ଆଜି ତେଣୁ
ତା ହାତ ନଥିବାକଥା ସ୍ଥିର ହୋଇ ଏଲ୍‌ବମରେ
ତାର ନିଜ ଜ୍ୟାକେଟ୍ ପକେଟ୍‌ରେ

ସବୁଯୁକ୍ତି ତର୍କର ତ ଅବସାନ ସେଠରେ ସେଦିନ
ସାମ୍ନାରେ ସ୍ୱାଧୀନତା
ଦିଲ୍ଲୀରେ ନେହେରୁ ଜିନ୍ନା ମାଉଣ୍ଟ୍ ବ୍ୟାଟେନ୍
ଗାନ୍ଧି, ଆଜାଦ, ଲିଆକତ ଅଲ୍ଲୀ
ବିହାର ଓ ପଞ୍ଜାବର ଆକାଶ ଖୁନ୍‌ରେ ଲାଲ୍·····
ଷ୍ଟେନସ୍ ପତ୍ରିକାରେ
ସେଦିନ ସେଠରେ
ମୋ ଦୋସ୍ତର ହାତଥିଲା ପକ୍ଷାଘାତ ହୋଇପଡ଼ି

ସ୍ଥିର ସ୍ତବ୍ଧ
ଟେନେସ୍ କୋର୍ଟ ଚଟାଣ ଉପରେ

ଆଜ କାଲ୍ସ ସକାଳର ସମାଜରେ ଫଟୋ ତାର ପ୍ରଥମ ପୃଷ୍ଠାରେ
ମୁହଁରେ ସସ୍ମିତ ହସ
ଘୋଷଣାରେ
"ପ୍ରାଚୀନ ଏ ସଭ୍ୟତାର ପରମ୍ପର ସଂସ୍କୃତି ଓ ମହାନ ଐତିହ୍ୟ,
ଖ୍ରୀପଣରୁ ଖ୍ରୀପଣକୁ
ସଭାରୁ ବଧାନ ସଭା
ଲୋକସଭା, ରାଜ୍ୟସଭା ବ୍ୟାପି
ପକେଟ୍ରୁ ପକେଟ୍କୁ
ତା ହାତରେ, ପକେଟ୍ରେ
କାଗଜ କାଗଜ କେତେ କେତେ ଯେ କାଗଜ
ଜନ୍ମ ମୃତ୍ୟୁ ଯନ୍ତ୍ରଣାର ଜବ୍ ଖୋର ସବୁ ପ୍ରଶ୍ନ ତେଣିକି
ହାତ ତାର ପକେଟ୍ରେ······ମାନ୍ୟବର ମଂତ୍ରୀଙ୍କର
ମୋ ଦୋସ୍ତର ହାତ ।



# ଆର ଶତାବ୍ଦୀକୁ

ଆମ ଏ ସମୟର ଆଶ୍ଚର୍ଯ୍ୟ ଖବର ଯେତେ ଆଶ୍ଚର୍ଯ୍ୟ ଘଟଣା
ଯେତେବେଳେ ଲେଖାହେବ ଇତିହାସ ପୃଷ୍ଠାରେ
ଆର ଶତାବ୍ଦୀରେ
ପ୍ରାର୍ଥନା ସଭାର ଏକ ଶୀତ ଅଣ୍ଡା ଝାପ୍‌ସା ଆସରରେ
ସେ ଲୋକର ମୃତ୍ୟୁ ହେଲା ଆତତାୟୀ ଗୁଳିରେ କପଣ ।

ତା'ପରେ ତ ହତ୍ୟା ତାର ଚଳୁଥିଲା ବାରମ୍ବାର
ନିୟମିତ କାର୍ଯ୍ୟ-ସୂଚି ପରି
ପ୍ରତିଦିନ ପଞ୍ଜାବ, କାଶ୍ମୀର, ବହୁବହୁ ବିଭିନ୍ନ ପ୍ରାନ୍ତରେ
ପୃଥିବୀର ଖ୍ୟାତନସ୍ତ ନନ୍ଦାବର୍ତ୍ତି ଗତ
କପଣ ନିଃଶବ୍ଦ ଥିଲା ଆକସ୍ମିକ ଦୁର୍ଘଟଣା
ଆକସ୍ମିକ ମୃତ୍ୟୁର ଭୟରେ ।

ସେଦିନ ତା' ପାଦଚିହ୍ନ ଥିବ ଯଦି ଫୁଲରେ ଫୁଲରେ
ଜଷି, କଢ଼, ବଉଳରେ ତା ଦେହର ମୃଦୁଗନ୍ଧ
ଫେରୁଥିବ ପ୍ରତିବର୍ଷ ବସନ୍ତରେ, ଆଷାଢ଼ର ଆକାଶରେ ଆସୁଥିବ
ତା କେଶର ନିଘଞ୍ଚ ପ୍ଲାବନ
ସେଦିନ ସେ ଶବ ଯଦି ପୃଥିବୀର ଆବର୍ତ୍ତିରେ
ଯକ୍ଷକନ୍ୟା ବିରହର ଗୀତ ।
ଆଜିର ଏ ଦ୍ୱିଧା ଭୟ ଆଶଙ୍କାର ଖବରକୁ ଡେଇଁ
ତା' ସତ୍ତାକୁ ଆଜି ଯାଉ ଗର୍ଭଗୃହ ସମାଧିର ଅନ୍ଧାରରୁ
କରୁଣା ଓ ବିଶ୍ୱାସର ଦୁଇଟି ଜ୍ୱଳନ୍ତ ଆଖି······
ଆମର ଏ ସମୟର ଏକମାତ୍ର ସାନ୍ତ୍ୱନା
ଓ ଏକମାତ୍ର ନିର୍ଭୟ ଆଶ୍ରୟ
ଆର ଶତାବ୍ଦୀକୁ ।



# ମାଣିକେଶ୍ୱରୀ

ଝଡର ମେଘର ଜହ୍ନ ତୋ ହାତ ତ ପଦ୍ମଫୁଲ ପତ୍ର
ଝଡର ମେଘର ଜହ୍ନ ତୋ ଓଠ ତ ଫୁଲର ପାଖୁଡ଼ା
ସେ ଫୁଲ ପାଖୁଡ଼ା ଟାଣ ଲୁହାଠାରୁ
ସେ ଫୁଲ ପାଖୁଡ଼ା ଯଦି ଲାଗେ କେବେ ଇସ୍ପାତ ଦେହରେ

ଇସ୍ପାତ ନରମ ହୋଇ ଭାଙ୍ଗିଯାଏ ।
ଝଡର ମେଘର ଜହ୍ନ
ତୋ କଳା ଆଖିର ଜ୍ୟୋତି
ଝଡ଼ ଝଡ଼ ଝାଡ଼ ଜଙ୍ଗଲରେ
ଝଡର ମେଘର ଜହ୍ନ
ତୋ ଖୋସାର ଝାଡ଼ ତଳୁ ଉଡ଼ିଯାଏ ହଳଦି ବସନ୍ତ
ତୋ ନଖର ତୀକ୍ଷଣ ଶାଣ
ଟାଙ୍ଗି ଛୁରି କଟୁରି ଦାଢ଼ରେ
ଝଡର ମେଘର ଜହ୍ନ
ତୋ କଳା ଆଖିର ତୀକ୍ଷ୍ଣ କଲ୍ୟାଣ ମୋ
ଦେହର ସତ୍ତ୍ୱରେ ।

ଝଡର ମେଘର ଜହ୍ନ
ତୋ ଆଖିର କଜ୍ଜଳରୁ ଅନ୍ଧାର ଜମାଟ ବାନ୍ଧ
ବାଟ ଘାଟ ଝାଡ଼ ଜଙ୍ଗଲରେ
ଅନ୍ଧାର ଶକ୍କଣ ହୋଇ ଧାଏ ମୋର ନଗ୍ନ ଚେତନାକୁ
ତୋ କଲ୍ୟାଣ ଆଶୀର୍ବାଦ ମୋର ବର୍ଛା ଛୁରି କଟୁରିକୁ
ତୀକ୍ଷ୍ଣ କରୁ ତୀକ୍ଷ୍ଣ କରୁ
ତୋ ଜଭ ନଖର ଲାଲ ଶୋଣିତ ରକ୍ତରେ ।